

# ବୈଜ୍ଞାନିକ ଲର୍ଡ଼ ଲିଷ୍ଟର୍

ଗୋବିନ୍ଦ ମିଶ୍ର

ଜନଶକ୍ତି ପୁସ୍ତକାଳୟ

ବାଲୁବଜାର, କଟକ-୨

"ରୋଗୀ ଦେହରେ ଅସ୍ତ୍ରୋପଚାର ସଫଳ ହୋଇଥିଲା; କିନ୍ତୁ ତାର ରକ୍ତ ବିଷାକ୍ତ ହୋଇପଡ଼ିବାରେ ସେ ମରିଗଲା ।"

ଇଂଲଣ୍ଡର ହସ୍ପିଟାଲମାନଙ୍କରୁ ପ୍ରତ୍ୟେକ ଦିନ ସ୍ୱାସ୍ଥ୍ୟ ବୁଲେଟିନରେ ଏହି କଥା ହିଁ ପ୍ରକାଶ ପାଉଥିଲା । ଊନବିଂଶ-ଶତାବ୍ଦୀର ଅଧାଅଧି ପର୍ଯ୍ୟନ୍ତ ହସ୍ପିଟାଲ ବୁଲେଟିନମାନଙ୍କରେ ଏହାହିଁ ଥିଲା ଦୈନନ୍ଦିନ ବିବରଣୀ । ରକ୍ତ କିପରି ବିଷାକ୍ତ ହେଲା, ଏହାର ପ୍ରତିକାର କରାଯାଉ ନାହିଁ କାହିଁକି, ଏହି ପ୍ରଶ୍ନ ପଚାରିବାକୁ କେହି ସାହସ କରିପାରୁ ନଥିଲେ ।

ଶତାଧିକ ବର୍ଷ ତଳର କଥା । ଦେହରେ କ୍ଷତ ହୋଇଗଲେ କିମ୍ବା ଅସ୍ତ୍ରୋପଚାର ପରେ ବଞ୍ଚିବାର ଆଉ କୌଣସି ଆଶା ନଥିଲା । ଯିଏ ବଞ୍ଚିଲା, ତାର ଭାଗ୍ୟ ଟାଣ ବୋଲି ଲୋକେ କହୁଥିଲେ । ଅସ୍ତ୍ରୋପଚାର ପରେ ଦେଖାଯାଉଥିଲା ରୋଗୀ ବେଶ୍ ସୁସ୍ଥ ଅନୁଭବ କରୁଛି; କିନ୍ତୁ ଦିନେ ଦୁଇ ଦିନ ପରେ ସେ ପୁଣି ରୋଗାକ୍ରାନ୍ତ ହୋଇ ଅଳ୍ପ ଦିନ ପରେ ମରିଯାଉଥିଲା । ତେଣୁ ଡାକ୍ତରଙ୍କ ଛୁରୀ ଦେଖିବାମାତ୍ରେ ଲୋକେ ଡରି ଯାଉଥିଲେ । ଶତକଡ଼ା ୨୭ ଭାଗ ରୋଗୀ ମରିଯାଉଥିଲେ । ଡାକ୍ତରମାନଙ୍କ ମନରେ ଆଶ୍ୱାସନା ଥିଲା ଯେ, ଯାହାହେଉ ଅନ୍ୟ ରୋଗୀ ତ ବଞ୍ଚୁଛନ୍ତି । ସେମାନେ ବାହାରେ ନିଜର ଦୁର୍ବଳତା ଓ ତ୍ରୁଟିକୁ

ପ୍ରକାଶ କରୁନଥିଲେ ମଧ୍ୟ ମନେ ମନେ ବଡ଼ ଦୁଃଖିତ ହେଉଥିଲେ । ଭାବୁଥିଲେ, ଏହାର ପ୍ରତିକାର ସମ୍ପର୍କରେ ଆମକୁ କେହି ବୁଦ୍ଧି ଦିଅନ୍ତା କି ! କୌଣସି ଉପାୟ ବତେଇ ଦିଅନ୍ତା କି !

ଏହାର ପ୍ରତିକାର ଉପାୟ ଦେଖାଇଦେଲେ ଲର୍ଡ଼ ଲିଷ୍ଟର । ସେ ଯେଉଁ ଆଣ୍ଟିସେପ୍‌ଟିକ, ଅର୍ଥାତ୍, ରକ୍ତ ଯେପରି ବିଷାକ୍ତ ନ ହେବ ସେଥିଲାଗି ଏକ ଅଭିନବ ପନ୍ଥା ଦେଖାଇଦେଲେ । ତା ଫଳରେ ରୋଗୀର ହୃଦ୍‌ବୋଧ ହେଲା ଯେ ଅସ୍ତ୍ରୋପଚାର କରାଗଲେ ରକ୍ତ ବିଷାକ୍ତ ହେବନି । ମୃତ୍ୟୁ ମୁଖରୁ ମୁଁ ଉଦ୍ଧାର ପାଇବି । ବର୍ତ୍ତମାନ ଅସ୍ତ୍ରୋପଚାର ପୂର୍ବରୁ ରୋଗୀକୁ ଚେତନାଶୂନ୍ୟ କରିବା ପାଇଁ ଆନେସ୍ଥେଟିକମାନେ ନିଶା ପ୍ରୟୋଗ କରିଥାଆନ୍ତି । ସେ ନିଶା ଥିବା ଯାଏ କଷ୍ଟ ହୁଏନି । ନିଶା ଛାଡ଼ିଯିବା ପରେ ପ୍ରକୃତ ବିପଦ ଆରମ୍ଭ ହୁଏ ।

ଆଜିକାଲି ଯେଉଁ ଆନାସ୍ଥେଟିକ୍‌ସ ବା ଆନେସ୍ଥେସିଆ ବ୍ୟବସ୍ଥା କରାଯାଉଛି, ଆଗରୁ ଅସ୍ତ୍ରୋପଚାର ଲାଗି ଏହା ଚିନ୍ତା ସୁଦ୍ଧା କରାଯାଇ-ପାରୁ ନଥିଲା । ଆଜିକାଲି ପ୍ରାୟ ପ୍ରତ୍ୟେକ ଅସ୍ତ୍ରୋପଚାର ସଫଳ ହେଉଛି, ରୋଗୀ ବଞ୍ଚୁଛି । ଜୀବାଣୁନାଶକ ଔଷଧ ମୃତ ସଞ୍ଜୀବନୀର କାର୍ଯ୍ୟ କରୁଛି । ଆଗେ ଯିଏ ଅତି ଶୀଘ୍ର ଅସ୍ତ୍ରୋପଚାର କରିଦେଇ ପାରିଲା, ତାକୁ ଉତ୍କୃଷ୍ଟ ସର୍ଜନ କୁହାଯାଉଥିଲା । ଫଳରେ ଅଧା-ପନ୍ତରିଆ କାମ ହେଉଥିଲା । ଅସ୍ତ୍ରୋପଚାର ପୂର୍ବରୁ କେତେ ପ୍ରକାରର ପ୍ରତିଷେଧକ ବ୍ୟବସ୍ଥା ଅବଶ୍ୟ ଗ୍ରହଣ କରାଯାଉଥିଲା । ଅସ୍ତ୍ରୋପଚାର କୋଠରୀକୁ ବାହାରର କୌଣସି ଲୋକକୁ ଛଡ଼ାଯାଉ ନଥିଲା । କୋଠରୀଟିକୁ ପରିଷ୍କାର ପରିଚ୍ଛନ୍ନ କରାଯାଉଥିଲା । ବାୟୁ ସଞ୍ଚାଳନର ସୁବ୍ୟବସ୍ଥା ହେଉଥିଲା । ଡାକ୍ତର ମଧ୍ୟ ପରିଷ୍କାର ପରିଚ୍ଛନ୍ନ ହୋଇ ଛୁରୀ

ଧରୁଥିଲେ । ତଥାପି ଅସ୍ତ୍ରୋପଚାରର ପରେ ନାନା ଆପତ୍ତି ଅଭିଯୋଗ ହେଉଥିଲା । ଇଂଲଣ୍ଡରେ ଏହି ଆପତ୍ତି ଅଭିଯୋଗ ଖୁବ୍ ଜୋର-ସୋରରେ ଚାଲିଲା । ଏକଦା ଚିନ୍ତା କରାଗଲା, 'ହସ୍‌ପିଟାଲ' ବ୍ୟବସ୍ଥା ପୂରାପୂରି ବନ୍ଦକରି ଦିଆଯିବା ଉଚିତ ହେବ ।

କିନ୍ତୁ ଲିଷ୍ଟରଙ୍କ ଦ୍ୱାରା ଜୀବାଣୁନାଶକ ଔଷଧ ଆବିଷ୍କାର ପରେ ଅଭିଯୋଗ କମି କମି ଆସି ପୂରାପୂରି ବନ୍ଦ ହୋଇଗଲା ।

ଯୋସେଫ ଲିଷ୍ଟର ପିଲାଦିନୁ ଇଚ୍ଛାକରି ଆସିଥିଲେ—ବଡ଼ ହେଲେ ଜଣେ ବଡ଼ ସର୍ଜନ, ଡାକ୍ତର ହେବେ । ଏହି ଇଚ୍ଛା ବ୍ୟତୀତ ଆଉ ଦ୍ୱିତୀୟ ଇଚ୍ଛା ତାଙ୍କର ନଥିଲା ।

ସେ ଥିଲେ ବିଖ୍ୟାତ ବୈଜ୍ଞାନିକ ଯୋସେଫ ଜାକ୍‌ସନ୍ ଲିଷ୍ଟରଙ୍କ ଚତୁର୍ଥ ପୁତ୍ର । ବର୍ତ୍ତମାନ ଡାକ୍ତରମାନେ ଯେଉଁ ଆଧୁନିକ ଅଣୁବୀକ୍ଷଣ ଯନ୍ତ୍ର ବା ମାଇକ୍ରୋସ୍କୋପ ବ୍ୟବହାର ଦ୍ୱାରା କ୍ଷୁଦ୍ରାତିକ୍ଷୁଦ୍ର ଜୀବାଣୁମାନଙ୍କୁ ଦେଖି ରୋଗର କାରଣ ନିରୂପଣ କରୁଛନ୍ତି ତାହା ହେଉଛି ଏହି ଜାକ୍‌ସନଙ୍କ ଅବଦାନ । ଅବଶ୍ୟ ତାଙ୍କ ଆଗରୁ ଏହି ଯନ୍ତ୍ରର ଉଦ୍‌ଭାବନ ହୋଇଥିଲା, ମାତ୍ର ଜାକ୍‌ସନ୍ ଏହି ଯନ୍ତ୍ରର ଯଥେଷ୍ଟ ଉନ୍ନତି ବିଧାନ କରିଥିଲେ ।

ଏମାନେ ଥିଲେ ଏକ ଧର୍ମସମ୍ପ୍ରଦାୟର ଲୋକ । ସେମାନଙ୍କୁ ସେତେବେଳେ କୁହାଯାଉଥିଲା କ୍ୱାକର୍ । ସେମାନେ ନିଜକୁ କହୁଥିଲେ, 'ବନ୍ଧୁ ସମାଜ' ବା ସୋସାଇଟି ଅଫ୍ ଫ୍ରେଣ୍ଡସ୍ । ତେଣୁ ବାରନ୍ ଲିଷ୍ଟର ଅତ୍ୟନ୍ତ ଧାର୍ମିକ ଓ କଠୋର କର୍ତ୍ତବ୍ୟ ଭିତରେ ଗଢ଼ିଉଠିଥିଲେ । ସ୍କୁଲକୁ ପଠାଇଲେ ଦୁଏତ ପିଲାଙ୍କ

ଧର୍ମନଷ୍ଟ ହୋଇଯିବ ବୋଲି ତାଙ୍କ ମାଆ ତାଙ୍କୁ ସ୍କୁଲକୁ ପଢ଼ିବାକୁ ନ ପଠାଇ ଘରେ ରଖି ପାଠ ପଢ଼ାଇଥିଲେ । ସେ, ତାଙ୍କ ଭାଇ ଭଉଣୀମାନେ ଏକାଠି ଘରେ ରହି ପଢ଼ିଥିଲେ । ଗୃହହିଁ ହେଲା ପାଠଶାଳା ।

ପିଲାଦିନରୁ ବାପ ମାଆ ସେମାନଙ୍କୁ କହୁଥିଲେ ଯେ ମନୁଷ୍ୟ ଜୀବନ ହେଉଛି ଭଗବାନଙ୍କ ଦାନ । ତେଣୁ ଏ ଜୀବନକୁ ଅନ୍ୟ-ମାନଙ୍କ ସେବାରେ ନିୟୋଜିତ କରିବା ଉଚିତ । ପିଲାଦିନର ଏହି ଶିକ୍ଷାକୁ ଯୋସେଫ୍ ବାଇନ ଲିଷ୍ଟର ଜୀବନବ୍ୟାପୀ ମନେ ରଖିଥିଲେ । ପ୍ରକୃତରେ ମନୁଷ୍ୟର ସେବା ଲାଗି ସେ ଯାହା କରି ଯାଇଛନ୍ତି ଅନ୍ୟ କେହି କରିପାରି ନାହାନ୍ତି ।

ସେମାନେ ଥିଲେ ଏକ ସୁଖୀ ପରିବାରର ଲୋକ । ଯୋସେଫଙ୍କ ବାପ ମାଆ ଅତି ନିଷ୍ଠାପର ଧର୍ମପ୍ରାଣ ଲୋକ ହୋଇଥିଲେ ମଧ୍ୟ ନିଜ ପିଲାମାନଙ୍କୁ ଯଥେଷ୍ଟ ସ୍ୱାଧୀନତା ଦେଉଥିଲେ । ଯୋସେଫ ଓ ତାଙ୍କ ଭାଇ ଭଉଣୀମାନେ ବାହାରକୁ ଯାଇ ଅନ୍ୟମାନଙ୍କ ସହିତ ଖେଳ କସରତ କରୁଥିଲେ, ବିଭିନ୍ନ ସଭାସମିତି ମେଳା ମଉଛବରେ ଯୋଗ ଦେଉଥିଲେ । ଆଖପାଖ ମଫସଲ ଅଞ୍ଚଳକୁ ବୁଲି ବୁଲି ଯାଉଥିଲେ । ବୁଲାବୁଲି କରିପାରୁଥିଲେ । ସାଙ୍ଗ ସାଥୀ କରୁଥିଲେ । ବାପ ମାଆଙ୍କ ବଡ଼ ଶିକ୍ଷା ଥିଲା, ସମୟ ନଷ୍ଟ କରିବ ନାହିଁ । କାରଣ ସମୟ ଭଳି ମୂଲ୍ୟବାନ ଜିନିଷ ନାହିଁ । ପ୍ରତ୍ୟେକ ସମୟରେ ଅନ୍ୟର ସେବା କର । ସେଥି ସମ୍ପର୍କରେ ଚିନ୍ତାକର । ଅନ୍ୟମାନେ ବିରକ୍ତ ହେବାଭଳି କଥା କୁହ ନାହିଁ । ଏହା ଥିଲା ଭଗବାନ ଯିଶୁଖ୍ରୀଷ୍ଟଙ୍କ ମହତ୍‌ବାଣୀ । ଏହି କଥା ସବୁବେଳେ କହି

କିନ୍ତୁ ବାପ ମାଆ ଯୋସେଫଙ୍କ ମନ ଓ ହୃଦୟକୁ ପଢ଼ିଦେଇ ଦେଇଥିଲେ କିନ୍ତୁଲେ ଚଳେ । ତେଣୁ ତାଙ୍କ ଭାଇ ଓ ଭଉଣୀମାନେ ଏସେକ୍‌ସର ଅଞ୍ଚଳ ଓ ପଲ୍ଲୀ ଅଞ୍ଚଳକୁ ବୁଲାବୁଲି କରିବାକୁ ଗଲାବେଳେ ବିଭିନ୍ନ ଫୁଲ ଫଳ, କୀଟପତଙ୍ଗ ଓ ହାଡ଼, ଶିଙ୍ଗ ଆଦି ସଂଗ୍ରହ କରୁଥିଲେ ।

ବାପାମାଆଙ୍କ ସନ୍ତାନମାନଙ୍କ ମଧ୍ୟରେ ଯୋସେଫ ବାରନ୍ ଥିଲେ ସବୁଠାରୁ ଚଲାକ ଚତୁର । ତାଙ୍କ ବାପାଙ୍କ ଭଳି ତାଙ୍କର ବିଜ୍ଞାନ ଆଡ଼କୁ ମନ ଢଳିବାରେ ଲାଗିଥିଲା । ଫୁଲଟିଏ ଦେଖିଲେ ଏହା କିପରି ଫୁଟିଲା, ଏହା ବାସୁଛି କିପରି, ଏହାର ଏତେ ପାଖୁଡ଼ା କାହିଁକି, ପକ୍ଷୀଟିଏ ଦେଖିଲେ ଏହାର ଡେଣା ଲାଗିଲା କିପରି, ଅଣ୍ଡା ଭିତରୁ ବାହାରି ଏହା ବଡ଼ ହେଉଛି କିପରି, ଏସବୁ ପ୍ରଶ୍ନ ସେ ନିଜକୁ ନିଜେ ପଚାରୁଥିଲେ । ଏହି ପ୍ରଶ୍ନ ପଚାରିବାରେ ବାପା ମାଆ ଭାବି-ନେଇଥିଲେ—ବାରନ ବଡ଼ ହେଲେ ନିଶ୍ଚୟ ଏକ ବଡ଼ ବୈଜ୍ଞାନିକ ହେବ । ତେଣୁ ସେମାନେ ସେହି ଢଙ୍ଗରେ ତାଙ୍କୁ ଗଢ଼ିବାରେ ଲାଗିଥିଲେ ।

ଟିକିଏ ବଡ଼ ହେବାପରେ ବାପମାଆ ଯୋସେଫ୍‌ଙ୍କୁ ସ୍କୁଲରେ ପାଠ ପଢ଼ାଇବାପାଇଁ ବାଧ୍ୟହେଲେ । ସ୍କୁଲରେ ପଢ଼ୁଥିବାବେଳେ ମଧ୍ୟ ସେ ବେଙ୍ଗ, କୀଟପତଙ୍ଗ ଆଦିକୁ କାଟି ସେଗୁଡ଼ିକ ଭିତରେ କ'ଣ ସବୁ ଅଛି ଦେଖୁଥିଲେ । ବିଭିନ୍ନ କଙ୍କାଳର ସ୍କେଚ କରୁଥିଲେ ।

ବାସ୍ତବରେ ଯୋସେଫ୍ ଥିଲେ ଜନ୍ମରୁ ସର୍ଜନ ।

ସେତେବେଳେ ବହୁ ଡାକ୍ତର ବା ଧର୍ମାନ୍ଧଲୋକଙ୍କର ବିଶ୍ୱାସ ଥିଲା ଯେ ମନୁଷ୍ୟ ଦେହରେ ଅସ୍ତ୍ରୋପଚାର କରିବା ଯାହା ପ୍ରକୃତି ଉପରେ

ହସ୍ତକ୍ଷେପ ତାହା । ଏହା ଅତ୍ୟନ୍ତ ପାପକାର୍ଯ୍ୟ । ମନୁଷ୍ୟର ଶରୀର ହେଉଛି ଭଗବାନଙ୍କ ସୃଷ୍ଟି । ଏହି ସୃଷ୍ଟିକୁ ଛୁରୀରେ କାଟିବା ଭଗବାନଙ୍କୁ ଅମାନ୍ୟ କରିବା । ଏ ସବୁ ନାସ୍ତିକ, ଧର୍ମବିରୋଧୀ ପାପୀ ଲୋକଙ୍କ କାମ । ଯୋସେଫ ବାରନ ଲିଷ୍ଟରଙ୍କ ବାପା ନିଜେ ଜଣେ ବୈଜ୍ଞାନିକ ହେଲେ କ'ଣ ହେଲା, ସେ ମଧ୍ୟ ଏହି ଅନ୍ଧବିଶ୍ୱାସର ବଶବର୍ତ୍ତୀ ଥିଲେ । ତେଣୁ ତାଙ୍କ ପୁଅ ଜଣେ ବଡ଼ ସର୍ଜନ ହେଉ ବୋଲି ଚାହୁଁ ନଥିଲେ । ସେ ଯାହାହେଉ, ଯୋସେଫ ସର୍ଜନ ହେବାପାଇଁ ଜିଦ୍ ଧରିବାରେ ବାପା ବାଧହୋଇ ତାଙ୍କ ମନୋଭାବ ବଦଳାଇଲେ ଏବଂ ତାଙ୍କୁ ସର୍ଜନ କରିବାପାଇଁ ଯାହା ଆବଶ୍ୟକ ସବୁ ଯୋଗାଇଦେଲେ । ତାଙ୍କ ଧର୍ମାନ୍ଧତା ତାଙ୍କ ମନ ଭିତରେହିଁ ରହିଲା ।

ଯୋସେଫ ଲିଷ୍ଟର ସତରବର୍ଷ ବୟସରେ ଲଣ୍ଡନର ୟୁନିଭର୍ସିଟି କଲେଜକୁ ପଢ଼ିବାପାଇଁ ଗଲେ । ସେ ଜଣେ କ୍ୱାକର ସମ୍ପ୍ରଦାୟର ଲୋକ ହୋଇଥିବାରୁ ଅକ୍ସଫୋର୍ଡ଼ ଓ କାମ୍ବ୍ରିଜ ବିଶ୍ୱବିଦ୍ୟାଳୟ ତାଙ୍କୁ ଛାତ୍ର ଭାବରେ ଗ୍ରହଣ କରିନଥିଲେ । ଏହି ଦୁଇଟି ବିଶ୍ୱବିଦ୍ୟାଳୟରେ ସେତେବେଳେ କେବଳ ଇଂଲଣ୍ଡର ଚର୍ଚ୍ଚର ସଭ୍ୟଥିବା ପରିବାରର ପିଲାମାନଙ୍କୁ ଗ୍ରହଣ କରାଯାଉଥିଲା । ଏଗୁଡ଼ିକ ଥିଲା ପୁରୁଣା ବିଶ୍ୱ-ବିଦ୍ୟାଳୟ । କିନ୍ତୁ ଲଣ୍ଡନ ବିଶ୍ୱବିଦ୍ୟାଳୟ ଯୋସେଫ ଲିଷ୍ଟର ଜନ୍ମ-ହେବାର ମାତ୍ର ୧୭ବର୍ଷ ଆଗରୁ, ଅର୍ଥାତ୍, ୧୮୨୮ରେ ପ୍ରତିଷ୍ଠିତ ହୋଇଥିଲା । ଏହି ବିଶ୍ୱବିଦ୍ୟାଳୟରେ ଛାତ୍ର ଗ୍ରହଣ ଲାଗି କୌଣସି ଧର୍ମଗତ କଟକଣା ନଥିଲା । ତେଣୁ ଲିଷ୍ଟରଙ୍କ ଭଳି ଜଣେ ଜ୍ଞାନୀ ଛାତ୍ରକୁ ପାଇପାରିଲା । ସେ ପ୍ରଥମେ ଔଷଧ ବିଜ୍ଞାନ ସମ୍ପର୍କରେ ଶିକ୍ଷା ଲାଭ ନକରି ସାଧାରଣ ଶିକ୍ଷା ଲାଭ କରିଥିଲେ । ତାଙ୍କ ବାପା ମଧ୍ୟ

ତାହା ଶୁଣୁ ନଥିଲେ । ତେଣୁ ତାଙ୍କର ପ୍ରଥମ ତିନବର୍ଷ ଭାଷା ଓ ସାହିତ୍ୟ ପଢ଼ାରେ ଅତିବାହିତ ହୋଇଥିଲା । ୧୮୪୭ରେ ସେ ଏହି ଭାଷା ଓ ସାହିତ୍ୟରେ ଡିଗ୍ରୀ ଲାଭକଲେ । ତାପରେ ସେ ପ୍ରବେଶକଲେ ମେଡ଼ିକାଲ ସ୍କୁଲରେ । ସେ ଯାଉ ଯାଉ ପାଠ ପଢ଼ାରେ, ବ୍ୟବହାରରେ ଶିକ୍ଷକମାନଙ୍କୁ ଏଭଳି ଭାବରେ ମୋହି ଦେଇଥିଲେ ଯେ ଜଣେ ଶିକ୍ଷକ ସେତେବେଳେ ଲେଖିଥିଲେ, "ଇଏ ସବୁ ଛାତ୍ରଙ୍କୁ ବଳିଗଲେ । ଏଭଳି ଛାତ୍ର ଆମେ କ୍ୱଚିତ୍ ଦେଖିଚୁ । ଏହାର ଭବିଷ୍ୟତ ଉଜ୍ଜ୍ୱଳ ।"

ପୂର୍ବରୁ କିଏ କ'ଣ କହିଛନ୍ତି, ଅନ୍ୟମାନେ କ'ଣ କହୁଛନ୍ତି, ଯୋସେଫ ଲିଷ୍ଟର ତା ଉପରେ ଗୁରୁତ୍ୱ ଦେଉ ନଥିଲେ । ସବୁ କଥାକୁ ସେ ଠିକ୍ ନିଖି ଭାବରେ ପରୀକ୍ଷା କରୁଥିଲେ । ସେ ନିଜ ସ୍ୱତନ୍ତ୍ର ସିଦ୍ଧାନ୍ତରେ ଉପନୀତ ହେଉଥିଲେ । ଖାଲି ପାଠ୍ୟପୁସ୍ତକ ପଢ଼ି ପାଠପଢ଼ା ହୋଇଗଲା ବୋଲି ସେ ଭାବୁ ନ ଥିଲେ । କିମ୍ବା ପାଠ୍ୟ ପୁସ୍ତକରେ ଯାହା ଅଛି, ତାହାହିଁ ଅକାଟ୍ୟ ସତ୍ୟ ବୋଲି ଭାବୁ ନଥିଲେ । ସେ ନିଜେ ଅନୁସନ୍ଧାନ କରୁଥିଲେ, ପରୀକ୍ଷା କରୁଥିଲେ, ତଥ୍ୟ ସଂଗ୍ରହ କରୁଥିଲେ, ପ୍ରମାଣ କରୁଥିଲେ, ସେତେବେଯାଇ ତାଙ୍କର ହୃଦ୍‌ବୋଧ ହେଉଥିଲା । ତାଙ୍କର ବହୁ ସମୟ ଅତିବାହିତ ହେଉଥିଲା କେବଳ ଗବେଷଣାରେ ।

ଅନ୍ୟ ଛାତ୍ରମାନେ ବିଶ୍ରାମ ଗ୍ରହଣ କରୁଥିବାବେଳେ ଯୋସେଫ ଲାବରେଟରୀରେ ବସି ଗବେଷଣାରତ ଥିବା ଲକ୍ଷ୍ୟ କରାଯାଉଥିଲା । ତାଙ୍କପରି କଠୋର ପରିଶ୍ରମ କରିବାଭଳି ଛାତ୍ର ଲଣ୍ଡନ ବିଶ୍ୱବିଦ୍ୟା-ଳୟରେ କ୍ୱଚିତ୍ ଥିଲେ । ଅବଶ୍ୟ ଡାକ୍ତର ଭାବରେ ସେ ସମୟରେ ସେ ଖୁବ୍ ଜନପ୍ରିୟ ଥିଲେ; କିନ୍ତୁ ସେ କହୁଥିଲେ ଡାକ୍ତର ସର୍ଜନ

ହେବା କ'ଣ ଏତେ ସହଜ ? ଥରେ ଯାହା ପଢ଼ୁଥିଲେ ତାଙ୍କର ମନେ ରହିଯାଉଥିଲା । କେଉଁଠି କେଉଁ ତଥ୍ୟ ପାଇଥିଲେ, ତାହା ବହୁବର୍ଷ ପରେ ମଧ୍ୟ କହିଦେଇପାରୁଥିଲେ । ବାସ୍ତବରେ ତାଙ୍କ ସ୍ମୃତିଶକ୍ତି ଥିଲା ପ୍ରଖର । ସାଙ୍ଗସାଥୀମାନେ କୌଣସି ବିଷୟ ପାଶୋରିଦେଲେ ଧାଉଁ-ଥିଲେ ଯୋସେଫ ଲିଷ୍ଟରଙ୍କ ପାଖକୁ । ସେ ସମସ୍ତଙ୍କୁ ଅତି ପ୍ରାଞ୍ଜଳ ଭାବରେ ବୁଝାଇଦେଉଥିଲେ ।

୧୮୫୦ରେ ଲିଷ୍ଟର ୟୁନିଭର୍ସିଟି କଲେଜ ହସ୍‌ପିଟାଲର ରେସିଡେଣ୍ଟ ଡାକ୍ତର ହେଲେ । ସେତିକିବେଳେ ଆଗରୁ ସେ ଯେଉଁ ଜ୍ଞାନ ଅର୍ଜନ କରିଥିଲେ ତାକୁ ପରୀକ୍ଷା କରି କାମରେ ଲଗାଇବା ପାଇଁ ସୁଯୋଗ ପାଇଲେ । ଅାଗରୁ ସେ ଅନେକ ଡାକ୍ତରଙ୍କୁ ନିଜର ସହଯୋଗୀ ଭାବରେ ସଂଗ୍ରହ କରିଥିଲେ । ସେମାନେ ଲିଷ୍ଟରଙ୍କ ପାଖ ଛାଡ଼ୁ ନଥିଲେ । ତାଙ୍କଠାରୁ ନୂଆ ନୂଆ କଥା ଶିଖିବା ପାଇଁ ସେମାନଙ୍କ ଆଗ୍ରହ ବଢ଼ିବାରେ ଲାଗିଲା ।

ଅନବରତ କଠୋର ପରିଶ୍ରମ ଫଳରେ ୧୮୪୮ ବେଳକୁ ସ୍ୱାସ୍ଥ୍ୟଭଙ୍ଗ ହୋଇଗଲା । ସେଥିଯୋଗୁଁ ତାଙ୍କୁ ବହୁ ଦିନ ଧରି ପୂର୍ଣ୍ଣ ବିଶ୍ରାମ ଗ୍ରହଣ କରିବାକୁ ପଡ଼ିଲା । ତା ସତ୍ତ୍ୱେ ଅନର୍ସ ସହିତ ସେ ଚିକିତ୍ସା ବିଜ୍ଞାନରେ ଔଷଧ ବିଭାଗରୁ ଡିଗ୍ରୀ ଲାଭ କରିପାରିଲେ ।

ଥରେ ତାଙ୍କର ଜଣେ ପରୀକ୍ଷକ ତାଙ୍କ ସମ୍ପର୍କରେ ଏକ ପ୍ରବନ୍ଧରେ ଲେଖିଥିଲେ, "ଲିଷ୍ଟରଙ୍କର ଯେ ଅଧିକ ଜ୍ଞାନ ନଥିଲା ତା' ନୁହଁ, ସେ ଯେଉଁ ବୟସରେ ଯେତିକି ଜ୍ଞାନ ଅର୍ଜନ କରିବା କଥା ତାଠାରୁ ଏତେ ଅଧିକ ଜାଣିଥିଲେ ଯେ ପରୀକ୍ଷା ଖାତାରେ କ'ଣ ଲେଖିବେ, କ'ଣ

ରୁଗ୍ଣଙ୍କର ଠିକ ଜାଣିପାରୁ ନଥିଲେ । ଗୋଟିଏ ଗୋଟିଏ ବିଷୟ ଉପରେ ସେ ଗୋଟିଏ ଗୋଟିଏ ସନ୍ଦର୍ଭ ଲେଖିପକାଉଥିଲେ ।”

କଲେଜ ହସ୍ପିଟାଲରେ ରେସିଡେଣ୍ଟ ଡାକ୍ତର ଥିବାବେଳେ ତାଙ୍କ ସମ୍ବନ୍ଧ ବର୍ଦ୍ଧିତ ଡାକ୍ତର କାମ କରୁଥିଲେ । ସେମାନଙ୍କ ସେବାରେ ହଜାର ହଜାର ରୋଗୀଙ୍କ ଜୀବନ ରକ୍ଷା ହୋଇପାରିଥିଲା । ୧୮୫୨ରେ “ରୟାଲ କଲେଜ ଅଫ୍ ସର୍ଜନ୍ସ”ରେ ସେ ଫେଲୋ ନିର୍ବାଚିତ ହେଲେ । ଏଇଟି ତାଙ୍କର ଛାତ୍ରଜୀବନର ଅବସାନ ଘଟିଲା । ସେତେବେଳକୁ ତାଙ୍କୁ ବୟସ ହୋଇଥିଲା ପଚିଶ ବର୍ଷ ।

ଲିଷ୍ଟରଙ୍କ ବାପା ଖୁବ୍ ଧନୀ ଥିବାରୁ ଲିଷ୍ଟରଙ୍କୁ ଉଚ୍ଚଶିକ୍ଷା ଦେବାରେ ତାଙ୍କର କୌଣସି ଅସୁବିଧା ହୋଇ ନଥିଲା । ସେ ତାଙ୍କୁ ଆହୁରି ତାଲିମ ଦେବାକୁ ଚାହିଁଲେ । ଏତେ କମ୍ ବୟସରୁ ପୁଅ ଚାକିରି କରୁ ବୋଲି ସେ ଚାହିଁଲେ ନାହିଁ । ଏଡ଼ିନ୍‌ବର୍ଗଠାରେ ଚିକିତ୍ସା ବିଦ୍ୟାରେ ଅଧିକ ତାଲିମ୍ ନେବାପାଇଁ ବାପା ତାଙ୍କୁ ପଠାଇଲେ । ସେତେବେଳେ ଏଡ଼ିନ୍‌ବର୍ଗଠାରେ ଦେଶର ବଡ଼ ବଡ଼ ବିଖ୍ୟାତ ସର୍ଜନ ଅଧ୍ୟାପକ ଥିଲେ ଏବଂ ସେଥିଠାରେ ଡାକ୍ତରୀ ବ୍ୟବସାୟ କରୁଥିଲେ । ସେତେବେଳେ ବିଲାତରେ ସର୍ବବିଖ୍ୟାତ ସର୍ଜନ ଥିଲେ ପ୍ରଫେସର ସିମେ । ଲିଷ୍ଟର ତାଙ୍କ ଅଧୀନରେ ରହି ତାଲିମ୍ ପାଇବାକୁ ଇଚ୍ଛା କଲେ । ଡାକ୍ତର ସିମେ ଲିଷ୍ଟରଙ୍କୁ ଛାତ୍ର ଭାବରେ ଗ୍ରହଣ କଲେ ଏବଂ ତାଙ୍କ ପାଖରେ ରଖିଲେ । ସେ ତାଙ୍କୁ ଏତେ ଭଲ ପାଇଲେ ଯେ, ଲିଷ୍ଟରଙ୍କୁ କେତେ ଦିନପରେ ନିଜେ ଘରେ ନେଇ ରଖିଲେ । ଡାକ୍ତର ସିମେ ତାଙ୍କ ଜୀବନରେ ଯେଉଁ ସବୁ ଅଭିଜ୍ଞତା ଲାଭ କରିଥିଲେ ଲିଷ୍ଟର ସେସବୁ ପାଇବାରେ କୌଣସି ଅସୁବିଧା ହେଲାନାହିଁ । ସର୍ଜରୀ ବିଦ୍ୟାରେ

କେତେକ ନୂତନ ପଦ୍ଧତି ସମ୍ପର୍କରେ ଲିଷ୍ଟର ଡାକ୍ତର ସିମେଙ୍କଠାରୁ ଶିକ୍ଷାକରି ପାରିଥିଲେ । ସେଥିଲାଗି ସେ କହୁଥିଲେ, ଦୁଇଜଣଙ୍କ ପାଖରେ ମୁଁ ଚିର ଋଣୀ, ଜଣେ ହେଉଛନ୍ତି ମୋ ବାପା, ଆଉ ଜଣେ ହେଉଛନ୍ତି ମୋ ଦିଗ୍‌ଦର୍ଶକ ପ୍ରଫେସର ସିମେ ।

ପ୍ରଥମେ ଲିଷ୍ଟର ଯେତେବେଳେ ଏଡିନ୍‌ବର୍ଗ ଗଲେ ସେତେବେଳେ ସ୍ଥିର କରିଥିଲେ ସେ ମାସେ ରହିବେ । କିନ୍ତୁ ରହୁ ରହୁ ସେ ସାତ ବର୍ଷ ରହିଗଲେ । ପ୍ରଫେସର ସିମେଙ୍କ ଘନିଷ୍ଠ ବନ୍ଧୁ ଥିଲେ ପ୍ରଫେସର ଗଫ୍ ।

ପ୍ରଫେସର ଗଫ୍ ଓ ପ୍ରଫେସର ସିମେ ଲିଷ୍ଟରଙ୍କୁ ଆପଣାର କରିନେଲେ । ଲିଷ୍ଟର ପ୍ରଥମେ ନିଯୁକ୍ତ ହେଲେ ଜଣେ କିରାଣୀ ଭାବରେ । ରୟାଲ କଲେଜର ଜଣେ ଫେଲୋ ଥାଇ ଏଠାରେ ଜଣେ କିରାଣୀ ଭାବରେ ନିଯୁକ୍ତି ପାଇବାରେ ତାଙ୍କର କୌଣସି ସଙ୍କୋଚ ନଥିଲା । କାରଣ ସେ ଚାହୁଁଥିଲେ ଜ୍ଞାନ ଅର୍ଜନ । ଅନ୍ୟର ଅଭିଜ୍ଞତାରୁ ଅଧିକ ଶିକ୍ଷା ପାଇବା ଥିଲା ତାଙ୍କର ଲକ୍ଷ୍ୟ । ସେ ଦେଖିଲେ ଏହି ଦୁଇ ଜଣ ପ୍ରଫେସରଙ୍କ ପାଖରୁ ସେ ଅଧିକ ଜ୍ଞାନ ପାଇ ପାରିବେ । ତେଣୁ ଜ୍ଞାନ ଆଗରେ ଫେଲୋସିପ୍‌କୁ ସେ ତୁଚ୍ଛ ମନେକଲେ । କିରାଣୀ ଭାବରେ ଲିଷ୍ଟରଙ୍କ ଦାୟିତ୍ୱ ବେଶୀ କିଛି ନଥିଲା । ତାଙ୍କର କାମ ଥିଲା ଏହି ଦୁଇ ପ୍ରଫେସର ରୋଗୀ ଦେହରେ ଅସ୍ତ୍ରୋପଚାର କରୁଥିବାବେଳେ ସେମାନଙ୍କୁ ସାହାଯ୍ୟ କରିବା । ପାଖରେ ଥାଇ ସେମାନଙ୍କୁ ଛୁରୀ କତୁରୀ ଆଦି ଯନ୍ତ୍ରପାତି ଯୋଗାଇଦେବା ଏବଂ ତୁଳା ଆଦି ଯୋଗାଇଦେବା । ହଁ, ଗୋଟିଏ ବଡ଼ କାମ ଥିଲା କେଉଁ ରୋଗୀର କି ରୋଗ, ତାର କେଉଁ ଅଂଶରେ ଅପରେସନ କରାଗଲା, ଏଥିଲାଗି କି କି ଯନ୍ତ୍ରପାତି ବ୍ୟବହାର

କଗଗଲ୍ ଆବ ନୋଟଖାତା ଧରି ନୋଟ୍ କରିବା । ଅଳ୍ପ ଦିନ ଭିତରେ ସେ ଏଭଳି ଦକ୍ଷତା ପ୍ରଦର୍ଶନ କଲେ ଯେ, ସେ "ଏଡ଼ିନବର୍ଗ ରୟାଲ ଇନ୍‌ଫର୍ମାରୀ"ରେ ରେସିଡ଼େଣ୍ଟ ହାଉସ ସର୍ଜନ ଭାବରେ ନିଯୁକ୍ତ ହେଲେ । ହାଉସ ସର୍ଜନ ଭାବରେ କାର୍ଯ୍ୟ କଲାବେଳେ ତାଙ୍କ ଅଧୀନରେ ଯେଉଁମାନେ ଡ୍ରେସର ଭାବରେ କାମ କରୁଥିଲେ ସେମାନେ ତାଙ୍କୁ "ଚିଫ୍" ବୋଲି ସମ୍ବୋଧନ କରୁଥିଲେ । କାରଣ ଅନ୍ୟ ହାଉସ୍ ସର୍ଜନମାନଙ୍କୁ ସେ ଅଳ୍ପଦିନରେ ଟପି ଯାଇଥିଲେ । କେବଳ ରୋଗ ନିଦାନ କରିବାରେ ନୁହେଁ, ଠିକ୍ ରୋଗକୁ ଠିକ୍ ଔଷଧ ଦେବାରେ ଏବଂ ଅସ୍ତ୍ରୋପଚାର କରିବାରେ ସେ ଅଳ୍ପଦିନ ଭିତରେ ପାରଦର୍ଶିତା ଅର୍ଜନ କରି ପାରିଥିଲେ । ସେ କ୍ରମଶଃ ଏତେ ଜନପ୍ରିୟ ହୋଇଉଠିଲେ ଯେ ହାଉସ ସର୍ଜନ ହେବାର ଅଳ୍ପ କେତେମାସ ପରେ ଆସିଷ୍ଟାଣ୍ଟ ସର୍ଜନ ହୋଇ ପାରିଥିଲେ । ଏକ ତରୁଣ ଡାକ୍ତର ପକ୍ଷରେ ଏପରି ଏକ ପଦବୀ ହାସଲ କରିବା ସହଜ ନୁହଁ । ସେ ପୁଣି ଏତେ ଅଳ୍ପକାଳ ଭିତରେ ପାଇବା ଆହୁରି ବିସ୍ମୟକର ।

୧୮୫୬ରେ ପ୍ରଫେସର ସିମେଙ୍କ ଝିଅ ଆଗ୍‌ନେସ ସିମେଙ୍କ ସହିତ ଲିଷ୍ଟରଙ୍କର ବିବାହ ହେଲା । ଏହାଙ୍କ ସହିତ ସେ ସଇଁତିରିଶ-ବର୍ଷ କାଳ ଆନନ୍ଦ ଓ ସୁଖରେ ଅତିବାହିତ କରିଥିଲେ । ପ୍ରକୃତରେ ଆଗ୍‌ନେସ ଥିଲେ ଲିଷ୍ଟରଙ୍କ ସହଧର୍ମିଣୀ । ଏହି ସଇଁତିରିଶବର୍ଷ କାଳ ଆଗ୍‌ନେସ ଲିଷ୍ଟରଙ୍କ ପରମ ସହଯୋଗିନୀ ଭାବରେ କାମକରି ଆସି-ଥିଲେ । ଲିଷ୍ଟରଙ୍କ ମନରେ କିମ୍ବା ଶରୀରରେ କ୍ଳାନ୍ତି ଆସିବାକୁ ସେ ଦେଇ ନଥିଲେ । ସେ ତାଙ୍କର ଖିଆପିଆଠୁ ଆରମ୍ଭ କରି ଟେବୁଲ ଚୌକୀ ସଜାଡ଼ିବା, ଅସ୍ତ୍ରୋପଚାର ଯନ୍ତ୍ରପାତିକୁ ଗରମପାଣିରେ ଧୋଇବା ଥିଲା ଆଗ୍‌ନେସଙ୍କ ଦୈନନ୍ଦିନ କାର୍ଯ୍ୟ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ

ଥିଲା ଲିଷ୍ଟରଙ୍କ ଲେକ୍‌ଚର ଏବଂ ପରୀକ୍ଷା ଆଦିକୁ ନୋଟଖାତାରେ ଟିପି ରଖିବା । ଲିଷ୍ଟରଙ୍କ ଯେତେ ସବୁ ପ୍ରବନ୍ଧ ଲେଖା ହୋଇଥିଲା ସେ ସବୁ ଥିଲା ଆଗ୍‌ନେସଙ୍କ ଅକ୍ଷର । କାରଣ ଲିଷ୍ଟର କହୁଥିଲେ, ଆଗ୍‌ନେସ ଲେଖୁଥିଲେ ।

କଠୋର ପରିଶ୍ରମର ଫଳ ସବୁବେଳେ ମିଳିଥାଏ । ପ୍ରଶଂସା ଓ ସମ୍ମାନ ତା ପଛରେ ଗୋଡ଼େଇଥାଏ । ଲିଷ୍ଟରଙ୍କ ଭାଗ୍ୟରେ ସେପରି ଘଟିଥିଲା । ୧୮୬୦ରେ ସ୍ତ୍ରୀ ଭିକ୍ଟୋରିଆ ଲିଷ୍ଟରଙ୍କୁ ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟର ସର୍ଜରୀ ପ୍ରଫେସର ଭାବରେ ନିଯୁକ୍ତ କଲେ । ଏହି ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ ହିଁ ଲିଷ୍ଟର ବହୁ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର କରିଥିଲେ । ସେ ଏଭଳି ସର୍ଜିକାଲ ବ୍ୟବସ୍ଥା ଉଦ୍‌ଭାବନ କଲେ, ଯାହା ଫଳରେ ଅଗଣିତ ଲୋକଙ୍କ ଜୀବନରକ୍ଷା ସମ୍ଭବ ହୋଇପାରିଲା ।

ଲିଷ୍ଟରଙ୍କ ତରୁଣ ବୟସରେ ଡାକ୍ତରମାନେ ଗୋଟିଏ କଥାକୁ ବେଶୀ ଭୟ କରୁଥିଲେ । ତାହା ହେଉଛି, "ହସ୍‌ପିଟାଲ୍ ରୋଗ ।" ରୋଗୀ ତ ରୋଗରୁ ମୁକ୍ତ ହେବାପାଇଁ ହସ୍‌ପିଟାଲକୁ ଆସୁଥିଲେ । ଡାକ୍ତରମାନେ ସେମାନଙ୍କର ଚିକିତ୍ସା କରୁଥିଲେ । ତେବେ ଅପରେସନ ବା ଅସ୍ତ୍ରୋପଚାରର ପରେ କ୍ଷତ ଭଲ ହେଉ ନଥିଲା ; ବରଂ ଏଭଳି ଏକ ରୋଗରେ ସେମାନେ ଆକ୍ରାନ୍ତ ହୋଇପଡ଼ୁଥିଲେ ଯେଉଁଥିରେ ମରିବା ସୁନିଶ୍ଚିତ ହୋଇପଡ଼ୁଥିଲା । କ୍ଷତ ଶୁଖୁ ନଥିଲା; ପୂଜ ହୋଇ ଏହା ଫୁଲିବାରେ ଲାଗୁଥିଲା । ରକ୍ତ ବିଷାକ୍ତ ହୋଇଯାଉଥିଲା । କୌଣସି ଡାକ୍ତର ରୋଗୀଙ୍କୁ ଏହି ଦୁର୍ଦ୍ଦଶାରୁ ରକ୍ଷାକରି ପାରୁନଥିଲେ । ହସ୍‌ପିଟାଲର ଅଧାଅଧି ରୋଗୀ ଏହି ରୋଗରେ ଆକ୍ରାନ୍ତ ହୋଇ ପଡ଼ୁଥିଲେ । ଏହା ଦାବାନଳ ଭଳି ହସ୍‌ପିଟାଲ ସାରା ବ୍ୟାପିଯାଉଥିଲା । ଗୋଟିଏ ରୋଗୀଠାରୁ ଅନ୍ୟ ରୋଗୀକୁ ଏହା ଡେଇଁବାକୁ ଲାଗୁଥିଲା ।

ଏହା କାହିଁକି ଓ କିପରି ହେଉଛି, କେହି ଜାଣିପାରୁ ନଥିଲେ, ବୁଝିହୋଇ ପାରୁ ନଥିଲେ । କେତେକ ଲୋକ କହିଲେ ହସ୍‌ପିଟାଲଗୁଡ଼ିକ ହେଉଛି ଅଭିଶାପ ସ୍ୱରୂପ, ଯମପୁରୀର ବଳି ମାଗନ୍ତିକ । ଏହି ହସ୍‌ପିଟାଲ ବ୍ୟବସ୍ଥାକୁ ପୂରାପୂରି ଉଠେଇ ଦିଆଯାଉ । ଆଉ କେହି କେହି କହୁଥିଲେ ରୋଗସବୁ ଭୂତ ଡାହାଣୀଙ୍କ ଆଡୁ ଆସୁଛି । ଭଗବାନ ସୃଷ୍ଟି କରନ୍ତି ମଣିଷ ରୋଗରେ ସଢ଼ୁ । ତେଣୁ ସେ ଭୂତ ଡାହାଣୀଗୁଡ଼ିକୁ ଏହି କାମରେ ନିଯୁକ୍ତ କରିଛନ୍ତି ।

କିନ୍ତୁ ଲିଷ୍ଟରଙ୍କ ଭଳି ଡାକ୍ତରମାନେ ଏହି ବିଶ୍ୱାସକୁ ଅମୂଳକ ବୋଲି ପ୍ରମାଣିତ କରିବା ଲାଗି କାମରେ ଲାଗିଗଲେ । ରୋଗ କାହିଁକି ସଂକ୍ରାମକ ହେଉଛି ତାର କାରଣ ଅନୁସନ୍ଧାନ କରିବାକୁ ଲାଗିଲେ ।

ବିଗତ ଶତାବ୍ଦୀମାନଙ୍କରେ ଜନସମାଜ ମଧ୍ୟରେ ଯାହା କାହାର ବେଶୀ ସମ୍ମାନ ଥିଲା, ସେ ହେଉଛି ଡାକ୍ତରମାନଙ୍କର, ଚିକିତ୍ସକମାନଙ୍କର । ତା ପୂର୍ବରୁ ଅସ୍ତ୍ରୋପଚାରର କାମ କରୁଥିଲେ ଭଣ୍ଡାରୀ ବା ବାରିକମାନେ । କ୍ଷୁର ଲହୁଣୀରେ ସେମାନେ ଏହି ଅସ୍ତ୍ରୋପଚାର କରି ଆସୁଥିଲେ । ଚିକିତ୍ସକମାନେ କେବଳ ଔଷଧପତ୍ର ଦେଉଥିଲେ । ସେମାନେ ଅସ୍ତ୍ରଧାରଣ କରୁନଥିଲେ । କିନ୍ତୁ ପରେ ଲୋକେ ଉପଲବ୍‌ଧି କଲେ ଯେ, ଯେଉଁମାନେ ରୋଗୀଙ୍କୁ ଚିକିତ୍ସା କରୁଛନ୍ତି ସେମାନଙ୍କଦ୍ୱାରା ଅସ୍ତ୍ରୋପଚାର କରାଗଲେ ବିପଦ ରହିବ ନାହିଁ । ତେଣୁ ଡାକ୍ତର ମାନେ ସର୍ଜନ ହେବା ଉଚିତ ବୋଲି ଲୋକଙ୍କ ଆଡ଼ୁ ଦାବୀ ହେଲା । ସେତେବେଳେ ଅପରେସନ ଥିଲା ଏକ ଭୟାବହ ବ୍ୟାପାର । କ୍ଲୋରୋଫର୍ମ କାହାରି ନ ଥିଲା । ଅପରେସନବେଳେ ରୋଗୀର କଷ୍ଟ ଯେପରି ନ ହୁଏ ସେଥିଲାଗି କୌଣସି ବ୍ୟବସ୍ଥା ନ ଥିଲା । ତାକୁ କଷ୍ଟ ବରଦାସ୍ତ କରିବାକୁହିଁ ପଡ଼ୁଥିଲା । ସର୍ଜନମାନେ ନିଜର ସାଧାରଣ ଲୁଗା ଅର୍ଥାତ୍

ନଷ୍ଟପିନ୍ଧା ଲୁଗାପଟା ଦେହରେ ରଖି ଅପରେସନ କରୁଥିଲେ । ଏପରିକ ଅପରେସନ କରିବା ପୂର୍ବରୁ ସାବୁନରେ ହାତ ସୁଦ୍ଧା ସଫା କରୁ ନ ଥିଲେ । ଯନ୍ତ୍ରପାତିକୁ ଷ୍ଟେରିଲାଇଜ କରିବା ତ ଦୂରର କଥା, କେତେକ ସର୍ଜନ ନିଜର ବାହାଦୁରି ଦେଖାଇବା ଲାଗି ରକ୍ତ ଲାଗିଥିବା ଲୁଗା ମଧ୍ୟ ପିନ୍ଧୁଥିଲେ । ଏଭଳି ଭାବରେ ଚିକିତ୍ସା କରାଗଲେ ତ କେହି ବଞ୍ଚିବା କଥା ନୁହଁ । ଭାଗ୍ୟ ବଳବତ୍ତର ଥିଲେ ହୁଏତ କେହି କେହି ବଞ୍ଚି ଯାଉଥିଲେ ।

ଲିଷ୍ଟର ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟରେ ନିଯୁକ୍ତି ପାଇବାପରେ ସର୍ଜିକାଲ କାର୍ଯ୍ୟ ବା ଅସ୍ତ୍ରୋପଚାରରେ ଲାଗି ଡାକ୍ତର ନିଜେ ପରିଷ୍କାର ପରିଚ୍ଛନ୍ନ ରହିବା ନିତାନ୍ତ ଆବଶ୍ୟକ ବୋଲି ଜୋରଦେଲେ । ଆଗରୁ ଅନ୍ୟ ଡାକ୍ତରମାନେ ଏକଥା ଉପଲବ୍ଧି କରୁ ନଥିଲେ । ଲିଷ୍ଟର ରୟାଲ ଇନ୍‌ଫର୍ମାରି (ଗ୍ଲାସ୍‌ଗୋ) ମେଡ଼ିକାଲ କଲେଜର ଦାୟିତ୍ୱ ନେବାର ଅଳ୍ପ କେତେମାସ ପରେ ଏହି କଲେଜର ପୁନର୍ଗଠନ କରାଗଲା । ସେ ତାଙ୍କର ୱାର୍ଡ଼ଗୁଡ଼ିକରେ ଯେତିକି ଆବଶ୍ୟକ ତାଠାରୁ ଅଧିକ ରୋଗୀ ରଖିବାପାଇଁ ଅନୁମତି ଦେଲେ ନାହିଁ । କାରଣ ଅଧିକ ଶଯ୍ୟା ରଖାଯିବା ଦ୍ୱାରା ଏବଂ ରୋଗୀଙ୍କୁ ଗଦା ଗଦି ହୋଇ ରହିବା ଦ୍ୱାରା ୱାର୍ଡ଼ଗୁଡ଼ିକ ଆବର୍ଜନାପୂର୍ଣ୍ଣ ହୋଇଉଠୁଥିବା ଏବଂ ରୋଗ ଜୀବାଣୁ ବ୍ୟାପୁଥିବା ସେ ଉପଲବ୍ଧି କରିପାରିଲେ ।

 କିମିଆର ଫ୍ଲୋରେନ୍‌ସ ନାଇଟିଙ୍ଗେଲ୍‌ଙ୍କ ଉଦ୍ୟମରୁ ହସ୍‌ପିଟାଲ ଗୁଡ଼ିକର ଯଥେଷ୍ଟ ଉନ୍ନତି ହୋଇସାରିଥିଲା । ହସ୍‌ପିଟାଲଗୁଡ଼ିକ ପାଇଁ ଭଲଭାବରେ ବାୟୁ ସଞ୍ଚାଳନ ହୋଇ ପାରୁଥିବା ଏବଂ ଭଲ ଆଲୁଅ ହେଉଥିବା ଘର ସବୁ ନିର୍ମାଣ କରାଗଲା । ଡାକ୍ତର ଲିଷ୍ଟର ମଧ୍ୟ ଏଭଳି ସବୁ ଘର ନିର୍ମାଣ ଲାଗି ଗୁରୁତ୍ୱ ଆରୋପ କଲେ । ସେ କହିଲେ

ଯେ, ଏ ଧରଣର ଓ୍ୱାର୍ଡ଼ରେ ରୋଗୀଙ୍କୁ ରଖାଗଲେ ରୋଗଜୀବାଣୁ ବ୍ୟାପିପାରିବ ନାହିଁ । ରୋଗୀ ମଧ୍ୟ ଆରାମରେ ରହିପାରିବେ । ଅପରେସନ ମଧ୍ୟ ଭଲଭାବରେ ଏବଂ ବିନା କଷ୍ଟରେ ହୋଇପାରିବ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ କେତେକ ଆମେରିକାନ୍ ସର୍ଜନ ଆବିଷ୍କାର କରିଥିଲେ ଯେ ଇଥର ଦେଇ ରୋଗୀକୁ ଶୁଆଇଦେବା ପରେ ନିଦ୍ରିତ ଅବସ୍ଥାରେ ଅସ୍ତ୍ରୋପଚାର କରାଗଲେ ରୋଗୀ କଷ୍ଟ ଅନୁଭବ କରିବ ନାହିଁ । ଲିଷ୍ଟରଙ୍କ ସମୟରେ ଜଣେ ବିଖ୍ୟାତ ସର୍ଜନ ଜନ୍ ୟଙ୍ଗ ସିମ୍‌ସନ ଇଂଲଣ୍ଡରେ ପ୍ରଥମେ ଏହି ବ୍ୟବସ୍ଥା ଆରମ୍ଭ କଲେ ।

ଏହା ସତ୍ତ୍ୱେ "ହସ୍‌ପିଟାଲ ରୋଗ" ଆଗରୁ ଯେପରି ବ୍ୟାପୁଥିଲା, ତାହା କମିଲା ନାହିଁ । ଲିଷ୍ଟର ବହୁତ ଚିନ୍ତିତ ହୋଇ ପଡ଼ିଲେ । ତାଙ୍କ କହିବା ଅନୁଯାୟୀ ନୂଆ ଡାକ୍ତରଖାନା ଘରକୁ ନିର୍ମାଣ କରାଗଲା, ଓ୍ୱାର୍ଡ଼ମାନଙ୍କରେ ବଡ଼ ବଡ଼ ଝରକା ରଖାଗଲା । ଭଲଭାବରେ ବାୟୁ ସଞ୍ଚାଳନ ହୋଇପାରିଲା । ଓ୍ୱାର୍ଡ଼ଗୁଡ଼ିକୁ ପରିଷ୍କାର ପରିଚ୍ଛନ୍ନ ରଖାଗଲା । ତାଲିମପ୍ରାପ୍ତ ଡାକ୍ତରମାନେହିଁ ଛୁରୀ କଇଁଚି ଧରି ଅପରେସନ କଲେ । ତଥାପି ରକ୍ତ ବିଷାକ୍ତ ହୋଇ ରୋଗୀଙ୍କ ମଧ୍ୟରୁ ଜଣଙ୍କ ପରେ ଜଣେ ମରିବାର ଦେଖାଗଲା । ରକ୍ତ କାହିଁକି ବିଷାକ୍ତ ହୋଇପଡ଼ୁଛି ତାର କାରଣ ଜାଣିବା ପାଇଁ ଲିଷ୍ଟରଙ୍କୁ ରାତିଦିନ ନିଦ ହେଲାନାହିଁ । ଲୋକେ କହିଲେ, ତୁମେ ଯାହା କହୁଥିଲ ସବୁ ତ କରାଗଲା, ତଥାପି ଅପରେସନ ସଫଳ ହେବା ସତ୍ତ୍ୱେ ରୋଗୀ ମରୁଛନ୍ତି କପରି ଓ କାହିଁକି ? ଏହାର କାରଣ ଜାଣିବା ପାଇଁ ଲିଷ୍ଟରଙ୍କ ଚିନ୍ତା ଲଣ୍ଡନ ଓ ଏଡିନବର୍ଗରେ ଥିବାବେଳୁ ଆରମ୍ଭ ହୋଇଥିଲା । ଗ୍ଲାସ୍‌ଗୋ ତାଙ୍କୁ ଆଜି ଏକ ନୂତନ ଚେତନା ଦେଲା ।

ସେ ଗମ୍ଭୀର ଭାବରେ ସବୁ କଥାକୁ ଦେଖୁଥିଲେ । ଚିନ୍ତା ମଧ୍ୟ କରୁଥିଲେ । ସେ ଦେଖିଲେ ଦେହର ଯେ କୌଣସି ଜାଗା କଟାଗଲେ କିମ୍ବା ତା ମନକୁ କଟିଗଲେ କ୍ଷତ ସ୍ଥାନଟିର ଚାରିପାଖେ କ୍ରମଶଃ ଫୁଲି ଉଠୁଛି, ପୂଜେଇ ଯାଉଛି । ତା ପରେ କ୍ରମଶଃ ରକ୍ତ ବିଷାକ୍ତ ହୋଇ-ଉଠୁଛି । ଏହିଭଳି ଭାବୁଭାବୁ ସେ ଦିନେ ଏହି ସମସ୍ୟାର ସମାଧାନ କିପରି ଭାବରେ ହେବ ଜାଣିପାରିଲେ । ପ୍ରଥମେ ପ୍ରଥମେ ସେ ଭାବୁ-ଥିଲେ, ବୋଧହୁଏ କ୍ଷତସ୍ଥାନରେ ପବନ ପଶିଯିବାରେ ଘା’ ଫୁଲି ଯାଉଛି । ସେଥିପାଇଁ ସେ ଅପ୍ରେସନ୍‌ର ପରେ ଭଲ ଭାବରେ ଘା’ରେ କନା ପୂରେଇ, କନା ଗୁଡ଼େଇ ଘା’କୁ ଡ୍ରେସିଂ କଲେ । ତଥାପି ଘା’ ଫୁଲିଲା, ରକ୍ତ ବିଷାକ୍ତ ହୋଇ ପଡ଼ିଲା । ଥରେ ତାଙ୍କର ଜଣେ ବନ୍ଧୁ ଆସି କହିଲେ, ବିଖ୍ୟାତ ଫରାସୀ ବୈଜ୍ଞାନିକ ଲୁଇ ପାଷ୍ଟର କ’ଣ ଏକ ବ୍ୟବସ୍ଥା ଉଦ୍ଭାବନ କରିଛନ୍ତି, ଯାହା ଫଳରେ ପାଗଳା କୁକୁର, ବାଇଆ ବିଲୁଆ ଆଦି କାମୁଡ଼ାରେ ହେଉଥିବା ଜଳାନ୍ତକ ରୋଗ ଭଲ ହୋଇପାରୁଛି । ଜଳାନ୍ତକ ବାସ୍ତବରେ ଏକ ଭୟାନକ ମାରାତ୍ମକ ରୋଗ । ଏହି ରୋଗରୁ ଆରୋଗ୍ୟ ପାଇଁ ଲୁଇ ପାଷ୍ଟର ନୂଆ ଉଦ୍ଭାବନ କରିଥିବାରୁ ସେତେବେଳେ ସେ ବିଶ୍ୱବିଖ୍ୟାତ ହୋଇପାରିଥିଲେ । ବିଶେଷତଃ ଜୀବାଣୁ ସମ୍ପର୍କରେ ଲୁଇ ପାଷ୍ଟରଙ୍କ ଉଦ୍ଭାବନ ଅମୃତ ତୁଲ୍ୟ ହୋଇଥିଲା ।

ଲିଷ୍ଟର ପାଷ୍ଟରଙ୍କ ଆବିଷ୍କାର ସମ୍ପର୍କରେ ପ୍ରକାଶିତ ବିଭିନ୍ନ ପ୍ରବନ୍ଧ ଓ ପୁସ୍ତକମାନ ଅତି ଆଗ୍ରହ ଓ ବ୍ୟାକୁଳତା ସହିତ ପଢ଼ିବାକୁ ଲାଗିଲେ । ଶେଷରେ ରକ୍ତ କାହିଁକି ବିଷାକ୍ତ ହେଉଛି, ତାର ଉତ୍ତର ପାଇଗଲେ ସେ । ସେ ସ୍ଥିର କଲେ ଯେ, ଘା’ ଫୁଲିବା ଏବଂ ରକ୍ତ ବିଷରପି ଯିବା ଆଦି ଯେଉଁ ରୋଗକୁ ହସ୍‌ପିଟାଲ୍ ରୋଗ (ଡାକ୍ତର-

ଖାନାରେ ଅପରେସନ ପରେ ଏହି ରୋଗ ହେଉଥିବାରୁ ଲୋକେ ଏହାକୁ ହସ୍‌ପିଟାଲ ରୋଗ କହୁଥିଲେ ) କୁହା ଯାଉଛି, ତାହା ବାସ୍ତବରେ କେବଳ ପବନ ଯୋଗୁଁ ହେଉ ନାହିଁ, ଅଣୁ ପରମାଣୁ ଭଳି ଅତି କ୍ଷୁଦ୍ର ବାକ୍ଟେରିଆ ବା ଜୀବାଣୁ ଯୋଗୁଁ ହେଉଛି । ଏହି ଜୀବାଣୁଙ୍କୁ ବାୟୁ ବହନ କରି କ୍ଷତ ସ୍ଥାନରେ ଗୁଡ଼ିଦେଇ ଯାଉଛି । ଏହା କ୍ଷତ ସ୍ଥାନରେ ପ୍ରବେଶ କରିବା ମାତ୍ରେ ସେଠି ବସବାସ କରି ସଙ୍ଗେ ସଙ୍ଗେ ତାର ପରିବାର ବୃଦ୍ଧି କରିବାରେ ଲାଗୁଛି । ଏହି ଗୁଡ଼ିକର ସଂଖ୍ୟା କ୍ଷିପ୍ର ଗତିରେ ବୃଦ୍ଧି ପାଇବାରେ ଘା' ପୂଜ-ଭରୁଛି ଓ ରକ୍ତ ବିଷାକ୍ତ ହୋଇଉଠୁଛି । କ୍ରମଶଃ ସମସ୍ତ ଶରୀରର ରକ୍ତ କଣିକା ବିଷାକ୍ତ ହୋଇ ରୋଗୀର ମୃତ୍ୟୁ ହେଉଛି । ଏହି ଜୀବାଣୁ ଯେପରି ଘା'ରେ ପ୍ରବେଶ କରି ପାରିବ ନାହିଁ ଏବଂ ରକ୍ତକୁ ବିଷାକ୍ତ କରିପାରିବ ନାହିଁ, ତାର ପ୍ରତିଷେଧକ ବ୍ୟବସ୍ଥା କରିବାକୁ ପଡ଼ିବ ।

ଏଥିଲାଗି ସେ ବହୁ ପରୀକ୍ଷା କଲେ, ଶେଷରେ ସଫଳ ହେଲେ । କ୍ଷତସ୍ଥାନକୁ ଡ୍ରେସିଂ କଲାବେଳେ ସେ କାର୍‌ବୋଲିକ ଏସିଡ୍ ବ୍ୟବହାର କଲେ । ଏହି ଏସିଡ୍ ପିଚ୍‌ରୁ ତିଆରି । ଏହା ଏକ ଭଲ ଜୀବାଣୁନାଶକ ଔଷଧ ବା ଆଣ୍ଟିସେପ୍‌ଟିକ୍ । ଏହା କ୍ଷତ ସ୍ଥାନରେ ଥିବା ଜୀବାଣୁଙ୍କୁ ମାରିଦେଇ ପାରିଲା ଏବଂ ଘାଆରେ ଲାଗିବା ଫଳରେ ତା ଉପରେ ବାହାରୁ ଆଉ କୌଣସି ଜୀବାଣୁ ଘାଆରେ ପ୍ରବେଶ କରିପାରିଲେ ନାହିଁ । ସେ କେତେକ ରୋଗୀଙ୍କ କ୍ଷତସ୍ଥାନକୁ ଏହି କାର୍ବୋଲିକ ଏସିଡ୍ ଦେଇ ଡ୍ରେସିଂକରି ଦେଖିଲେ । ରୋଗୀ ଶୀଘ୍ର ସୁସ୍ଥହୋଇ ଉଠୁଥିବା ଲକ୍ଷ୍ୟକଲେ । ଅସ୍ତ୍ରୋପଚାରର ପରେ ଏହିଭଳି ଭାବରେ ଡ୍ରେସିଂ କରିବାରେ ଆଉ କୌଣସି ବିପଦ ରହିଲା ନାହିଁ ।

ଲିଷ୍ଟର ପ୍ରଥମେ ଜଣେ ଏଗାର ବର୍ଷର ବାଳକ ଦେହରେ ଏହି ପରୀକ୍ଷା କଲେ । ଗୋଟିଏ ଶଗଡ଼ ଗାଡ଼ି ମାଡ଼ିଯିବାରେ ତାର

ଗୋଡ଼ରେ ଜୋରରେ ଆଘାତ ହୋଇଥାଏ । ସାଧାରଣତଃ ଏହିଭଳି ଦୁର୍ଘଟଣା ଘଟିଲେ ରୋଗୀକୁ ବହୁଦିନ ଧରି କଷ୍ଟଭୋଗ କରିବାକୁ ପଡ଼ିଥାଏ । ପିଲାଟି ହସ୍‌ପିଟାଲକୁ ଅଣାଯିବା ମାତ୍ରେ ଲିଷ୍ଟର ମେଞ୍ଚେ ଭୁଲାକୁ କାର୍ବୋଲିକ୍ ଏସିଡ଼୍ ଭିତରେ ବୁଡ଼େଇ କ୍ଷତସ୍ଥାନରେ ଦେଲେ । ତା'ପରେ ସାଧାରଣ ଭାବରେ କନା ଗୁଡ଼େଇ ବାଣ୍ଡେଜ୍ କରିଦେଲେ । ଗୁରିଦିନ ପରେ ଅନ୍ୟମାନଙ୍କ ଭଳି ତାକୁ ଜର ହେଲନାହିଁ କିମ୍ବା ରକ୍ତ ବିଷାକ୍ତ ହେଲନାହିଁ । ଅନ୍ୟ ଡାକ୍ତରମାନେ ବିସ୍ମିତ ହୋଇଗଲେ । ସମସ୍ତେ କହିଲେ, ଲିଷ୍ଟରଙ୍କ ହାତ ହେଉଛି ଅମୃତ ହସ୍ତ । କାର୍ବୋଲିକ୍ ଏସିଡ଼୍ ଦେହରେ ବୀଜାଣୁଙ୍କୁ ଏକାବେଳକେ ବଧ କରିଦେଇ ପାରିଲା । ପିଲାଟି ଛଅସପ୍ତାହ ପରେ ଆସ୍ତେ ଆସ୍ତେ ଗୁଲିବା ଆରମ୍ଭ କଲା । ତାର କ୍ଷତସ୍ଥାନ ଶୁଖିଆସିଲା ।

ଲିଷ୍ଟର ଏହିଭଳି ଏଗାରଜଣ ରୋଗୀଙ୍କୁ ଅଳ୍ପ କେତେଦିନ ଭିତରେ ଭଲକରି ଦେଇପାରିଲେ । ପିଲାଟି ସୁସ୍ଥ ହେବାଲାଗି ଯିବା ଛଅସପ୍ତାହ ଲାଗିଗଲା, ଅନ୍ୟ ରୋଗୀମାନେ ତାଠାରୁ କମ୍ ଦିନରେ ଆରୋଗ୍ୟଲାଭ କଲେ । ବାସ୍ତବରେ ଏହା ଏକ ମହାବିଜୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରଥମେ ସବୁଠାରୁ ବେଶୀ, ଅର୍ଥାତ୍ ଉଚ୍ଛ୍ୱସିତ ପ୍ରଶଂସା ପାଇଲେ ଏକ ସାତବର୍ଷ ବୟସର ପିଲା, ୍ଲିଷ୍ଟର ଜୀବନ ରକ୍ଷାକରି ଦେବାପରେ । ପିଲାଟିକୁ ହସ୍‌ପିଟାଲର ସମସ୍ତେ ଭଲ ପାଉଥିଲେ । ଲିଷ୍ଟର ମଧ୍ୟ ତାକୁ ଖୁବ୍ ଭଲ ପାଉଥିଲେ । ଥରେ ସେ ରାସ୍ତା ଉପରେ ବୁଲୁଥିବାବେଳେ ଗୋଟିଏ ଷ୍ଟେଟ ବସ୍ ତାକୁ ଧକ୍କାଦେଇ ଗୁଲିଗଲା । ପିଲାଟି ପ୍ରାୟ ମରିବା ଉପରେ । ତାର ଡାହାଣ ପାଖ ଗୋଡ଼ ଦୁଇଟି ଜାଗାରେ ଭାଙ୍ଗି ଯାଇଥିଲା । ସେ ସମୟରେ ଡାକ୍ତରମାନଙ୍କର ଏକମାତ୍ର ବ୍ୟବସ୍ଥା ଥିଲା ଗୋଡ଼କୁ କାଟିଦେବା ।

ଲିଷ୍ଟର ମନେ ମନେ ସ୍ଥିରକଲେ ପିଲାର ଗୋଡ଼ଟିକୁ ନ କାଟି ରକ୍ଷା କରିବେ । ତା ସଙ୍ଗେ ସଙ୍ଗେ ତାଙ୍କର "ଆଣ୍ଟିସେପ୍ଟିକ୍ ସର୍ଜରି"କୁ ମଧ୍ୟ ପରୀକ୍ଷା କରିବେ । ସେ ପିଲାଟିର କ୍ଷତସ୍ଥାନକୁ ପ୍ରଥମେ କାର୍ବୋଲିକ୍ ଏସିଡ଼୍ ରେ ବ୍ୟାଣ୍ଡେଜ କରାଇନେଲେ । ସଙ୍ଗେ ସଙ୍ଗେ ଘାଆ ଶୁଖି ଶୁଖି ଆସିଲା । ଜ୍ଜିମି କ୍ରମଶଃ ସତେଜ ହୋଇ ଉଠିଲା; କିନ୍ତୁ ପରେ ଦେଖାଗଲା ଜ୍ଜିମିର ଗୋଡ଼ର ଆଉ ଏକ କ୍ଷତରେ କାର୍ବୋଲିକ୍ ଏସିଡ୍ ଦେଇ ବ୍ୟାଣ୍ଡେଜ କରା ହୋଇନାହିଁ । ଫଳରେ ତାର ଦେହରେ ରକ୍ତ ବିଷାକ୍ତ ହୋଇଉଠୁଥିବା ସୂଚନା ଦେଖାଗଲା । ଲିଷ୍ଟର ଭାରି ବ୍ୟସ୍ତହୋଇ ପଡ଼ିଲେ । କିନ୍ତୁ ଲିଷ୍ଟର ପୁଣି ସେହି ସ୍ଥାନଟିକୁ ଆଣ୍ଟିସେପ୍ଟିକ୍ କାର୍ବୋଲିକ ଲେପନ ଦେଇ ଚିକିତ୍ସା କରିବାରେ ତା ଦେହ ଭଲହୋଇ ଆସିଲା । ଏଥିରୁ ତାଙ୍କର ଶିକ୍ଷାହେଲା ଯେ, ଜୀବାଣୁନାଶକ ବା ଆଣ୍ଟିସେପ୍ଟିକ୍ ଚିକିତ୍ସା ଠିକଣାଖି ଭାବରେ ହେବା ଆବଶ୍ୟକ । ଖୋଲାଥିବା ଘାଆ ବା କ୍ଷତସ୍ଥାନ ଛୋଟବୋଲି ତାକୁ ଅବହେଳା କରିବା ଅନୁଚିତ୍ ।

ଠିକ୍ ଏହି ସମୟରେ ଲିଷ୍ଟର ତାଙ୍କର ଆଣ୍ଟିସେପ୍ଟିକ୍ ଚିକିତ୍ସା ଆରମ୍ଭ କରୁଥିବା ଗ୍ଲାସ୍‌ଗୋ ଇନ୍‌ଫର୍ମାରି ମେଡ଼ିକାଲ କଲେଜରେ ହଠାତ୍ ହସ୍‌ପିଟାଲ ରୋଗ ବ୍ୟାପିଯିବାର ଦେଖାଗଲା । ଏହା କ୍ରମଶଃ ଭୟଙ୍କର ହୋଇଉଠିଲା । ଶହ ଶହ ରୋଗୀ ଜଣକ ପରେ ଜଣେ ମରିବା ଦେଖାଗଲା । ଡାକ୍ତର ଓ ନର୍ସମାନେ ହତାଶ ହୋଇପଡ଼ିଲେ । କେତେକ ଓ୍ୱାର୍ଡ଼ ପୂରାପୂରି ବନ୍ଦ କରିଦିଆଗଲା । ସଂକ୍ରାମକ ରୋଗ କାହିଁକି, କେଉଁ କାରଣରୁ ବ୍ୟାପିଲା, ସେ ସମ୍ପର୍କରେ ଅନୁସନ୍ଧାନ କରାଗଲା । ତଦନ୍ତ ପରେ ଜଣାଗଲା ଯେ, ଯେଉଁ ହସ୍‌ପିଟାଲ ନିର୍ମାଣ କରାଯାଇଛି ତାହା ଏକ ଅସ୍ୱାସ୍ଥ୍ୟକର ସ୍ଥାନ । ଘର ପାଖ ମାଟି ଖୋଳି

ତଳେ ଦେଖାଗଲା, ଗୃହର ଗାତରେ ବନ୍ଦ ହଇଜା ରୋଗୀଙ୍କୁ ଆଗରୁ ପୋତାଯାଇଛି । ହଜାର ହଜାର କଙ୍କାଳ ତା ଭିତରୁ ବାହାରିଲା । ଅଳ୍ପ କେତେବର୍ଷ ତଳେ ଯେଉଁ ହଇଜା ରୋଗୀ ମରୁଥିଲେ, ସେମାନଙ୍କୁ ଆଉ ଦୂରକୁ ନିଆ ନଯାଇ ଏହି ତଳେ ପୋତି ଦିଆଯାଉଥିଲା । ତା ଛଡ଼ା ଏହି ହସ୍‌ପିଟାଲ ପାଖକୁ ରହିଛି ଜ୍ୱର ରୋଗିମାନଙ୍କ ହସପିଟାଲ । ଅନ୍ୟ ଡାକ୍ତରମାନେ ଭାବିଲେ ବାୟୁ ଦୂଷିତ ହୋଇଯାଉଛି । ନାନା ଜୀବାଣୁ ଦେହ ଭିତରେ ପଶିବାରେ ହସ୍‌ପିଟାଲ ରୋଗ ହେଉଛି ।

କିନ୍ତୁ ସେମାନେ ଲକ୍ଷ୍ୟକଲେ ଲିଷ୍ଟର ଯାହେବ ଯେଉଁ ଓ୍ୱାର୍ଡରେ ତାଙ୍କର ଆଣ୍ଟିସେପ୍‌ଟିକ ଚିକିତ୍ସା ଚଳାଇଛନ୍ତି, ସେଠାରେ ଜଣେ ହେଲେ ରୋଗୀର ମୃତ୍ୟୁ ହୋଇନାହିଁ ।

ଲିଷ୍ଟର ଏହି ଘଟଣାରୁ ନିଶ୍ଚିତ ହୋଇ ଉଠିଲେ ଯେ, ସର୍ଜରୀରେ ଆଣ୍ଟିସେପ୍‌ଟିକ ଚିକିତ୍ସା ହେଉଛି ସବୁଠାରୁ ନିରାପଦ ବ୍ୟବସ୍ଥା । ସେ ଏଣିକି କେଉଁ କେଉଁ ରୋଗୀକୁ ଆଣ୍ଟିସେପ୍‌ଟିକ ଚିକିତ୍ସା କରିଛନ୍ତି, ତାର ଏକ ତାଲିକା ପ୍ରକାଶ କଲେ । ତଥାପି ଅନ୍ୟ ଡାକ୍ତରମାନେ ତାଙ୍କର ଏହି ନୂତନ ବ୍ୟବସ୍ଥାକୁ ସହଜରେ ଗ୍ରହଣକଲେ ନାହିଁ । ସେମାନଙ୍କର ବିଶ୍ୱାସ ହେଲାନାହିଁ । କେତେଜଣ କହିଲେ ଯେ, ଆଣ୍ଟିସେପ୍‌ଟିକ ଚିକିତ୍ସା କିଛି ନୂଆ କଥା ନୁହେଁ । ଏହା କେବଳ ମୂର୍ଖଙ୍କ ଅପଳାପ ମାତ୍ର । ଏହି ନୂଆ ବ୍ୟବସ୍ଥା ଯୋଗୁଁ ଯେ ରୋଗୀ ବଞ୍ଚିଯାଉଛନ୍ତି, ତାହା ନୁହେଁ; ସେମାନଙ୍କ ଭାଗ୍ୟ ଟାଣ ଯୋଗୁଁ ବଞ୍ଚୁଛନ୍ତି । ଆଉ କେତେକ କହି ବୁଲିଲେ ଯେ, ଆମେ ମଧ୍ୟ ଆଣ୍ଟିସେପଟିକ ବ୍ୟବସ୍ଥା ପ୍ରୟୋଗ କରି ଦେଖିଛୁ, କିନ୍ତୁ କୌଣସି କାମ ଦେଉନି । ବରଂ ଆଗେ ରୋଗୀ କିଛିଦିନ ବଞ୍ଚୁଥିଲେ

ଏହି ନୂଆ ବ୍ୟବସ୍ଥା ପ୍ରୟୋଗ କରିବାରେ ରୋଗୀ ସାଙ୍ଗେ ସାଙ୍ଗେ ମରି ଯାଉଛନ୍ତି । କିନ୍ତୁ ସେମାନେ ଲୁଚିକରି ଛପେଇ ଲିଷ୍ଟରଙ୍କ ଆଣ୍ଟିସେପ୍‌ଟିକ ଚିକିତ୍ସା ପ୍ରଣାଳୀକୁ ପ୍ରୟୋଗ କରି ପ୍ରକୃତରେ ଭଲ ଫଳ ପାଉଥିଲେ । ଶେଷରେ ସେମାନେ ସ୍ୱୀକାର କରିବାକୁ ବାଧ୍ୟ ହେଲେ ଯେ, ଅସ୍ତ୍ରୋପଚାର ଲାଗି ଆଣ୍ଟିସେପ୍‌ଟିକ ବ୍ୟବସ୍ଥା ଅପରିହାର୍ଯ୍ୟ । ସେମାନେ ସ୍ୱୀକାର କରନ୍ତୁ ନ କରନ୍ତୁ, ଆଣ୍ଟିସେପ୍‌ଟିକ ବ୍ୟବସ୍ଥା ସର୍ଜରି ପାଇଁ ନିରାପଦ ବୋଲି ଜନସାଧାରଣ କ୍ରମଶଃ ସ୍ୱୀକାର କଲେ । କାରଣ ସେମାନେ ଆଖି ଆଗରେ ଦେଖିଲେ ଲିଷ୍ଟର ଯେଉଁମାନଙ୍କୁ ଚିକିତ୍ସା କରୁଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବଞ୍ଚୁଛନ୍ତି ।

ଅବଶ୍ୟ ବହୁ ସର୍ଜନ ଆଣ୍ଟିସେପ୍‌ଟିକ ବ୍ୟବସ୍ଥାକୁ ପରୀକ୍ଷା କରିବାକୁ ରାଜି ହେଲେନାହିଁ, ତଥାପି ସେତେବେଳକୁ ଲିଷ୍ଟର ସ୍କଟ୍‌ଲାଣ୍ଡରେ ବିଖ୍ୟାତ ହୋଇଉଠିଥିଲେ । ଜନସାଧାରଣ ତାଙ୍କୁ ଗ୍ରହଣ କଲେ । ୧୮୬୯ରେ ଲିଷ୍ଟର ଏଡ଼ିନ୍‌ବର୍ଗରେ ସର୍ଜରି ପ୍ରଫେସର ଭାବରେ ନିଯୁକ୍ତି ପାଇଲେ । ଆଗରୁ ସେ ଏଠାରେ କେବଳ ଆସିଷ୍ଟାଣ୍ଟ ସର୍ଜନ ଥିଲେ । ତାଙ୍କର ଶିକ୍ଷକ ତଥା ଶ୍ୱଶୁର ପ୍ରଫେସର ସିମେ ସେତେବେଳେ ମୃତ୍ୟୁଶଯ୍ୟାରେ । ସେ ପ୍ରଫେସର ଥିଲେ ମଧ୍ୟ ଏହି କାମପାଇଁ ଅକର୍ମଣ୍ୟ ହୋଇପଡ଼ିଥିଲେ । ସମସ୍ତେ ଏକମତ ହେଲେ ଯେ, ଲିଷ୍ଟରହିଁ ପ୍ରଫେସର ସିମେଙ୍କ ସ୍ଥାନ ପୂରଣ କରିପାରିବେ । ତାଙ୍କର ବନ୍ଧୁ, ଛାତ୍ର ଓ ସହଯୋଗୀ କର୍ମୀବୃନ୍ଦମାନେ ସେମାନଙ୍କ 'ଚିଫ୍' ପୁଣି ଫେରି ଆସିବାରୁ ଖୁସି ହୋଇଉଠିଲେ । କାରଣ ସେମାନେ ଯାହା ପଢ଼ିବାପାଇଁ, ଜାଣିବାପାଇଁ ଚାହୁଁଥିଲେ, ଲିଷ୍ଟରହିଁ ସେହି ଶିକ୍ଷା ଦେଇପାରିବେ ବୋଲି ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା ।

ମେଡ଼ିକାଲ ଛାତ୍ରମାନେ ଲିଷ୍ଟରଙ୍କ ଅଧୀନରେ କାମକରିବା ପାଇଁ ଇଂଲଣ୍ଡର ବିଭିନ୍ନ ସ୍ଥାନରୁ ଆସି ଏଡ଼ିନବର୍ଗ ମେଡ଼ିକାଲ କଲେଜରେ ଭର୍ତ୍ତିହେବା ଲକ୍ଷ୍ୟ କରାଗଲା । ପ୍ରତିବର୍ଷ ଲିଷ୍ଟରଙ୍କ କ୍ଲାସରେ ଛାତ୍ରସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ସହରର ଧନୀଲୋକେ ସେମାନଙ୍କ ପରିବାରରେ କେହି ଅସୁସ୍ଥ ହୋଇ ପଡ଼ିବା ମାତ୍ରେ ଲିଷ୍ଟରଙ୍କୁ ଅଧିକ ଫିସ୍ ଦେଇ ଘରକୁ ଡାକନେବା ଦେଖାଗଲା । ଶେଷରେ ଇଂଲଣ୍ଡର ରାଣୀଙ୍କ ଗୃହଚିକିତ୍ସକ ଭାବରେ ଲିଷ୍ଟରଙ୍କୁ ନିଯୁକ୍ତ କରାଗଲା । ସେ କୋର୍ଟ ସର୍ଜନ ରହିଲେ । ଆବଶ୍ୟକ ପଡ଼ିବାମାତ୍ରେ ରାଣୀଙ୍କ ଚିକିତ୍ସା ପାଇଁ ତାଙ୍କୁ ଡକାଯାଉଥିଲା ।

ଜନପ୍ରିୟ ହୋଇଉଠିବା ସଙ୍ଗେ ସଙ୍ଗେ ଲିଷ୍ଟର କ୍ରମଶଃ ଧନୀ ହୋଇଉଠିଲେ । ପ୍ରଚୁର ଅର୍ଥ ଉପାର୍ଜନ କଲେ ସେ; କିନ୍ତୁ ତାଙ୍କର ଗୋଟିଏ ବଡ଼ ଦୁଃଖ ରହିଗଲା । ସ୍କଟଲଣ୍ଡ ବ୍ୟତୀତ ବାହାରେ ତାଙ୍କ ଆଣ୍ଟିସେପ୍ଟିକ ବା ଜୀବାଣୁନାଶକ ବ୍ୟବସ୍ଥାକୁ କେହି ସ୍ୱୀକାର କଲେ-ନାହିଁ କିମ୍ବା ତାକୁ କାମରେ ଲଗାଇବାକୁ ପ୍ରସ୍ତୁତ ହେଲେନାହିଁ । ରୋଗୀର ଜୀବନ ରକ୍ଷା କରିବା ଲାଗି ଏହାହିଁ ଏକମାତ୍ର ପନ୍ଥାବୋଲି ସେ ବାରମ୍ବାର ପରୀକ୍ଷାକରି ପ୍ରମାଣ ସହିତ ଦର୍ଶାଇଲେ ମଧ୍ୟ ଲଣ୍ଡନର ସର୍ଜନମାନେ ତାଙ୍କ କଥାପ୍ରତି କର୍ଣ୍ଣପାତ କଲେନାହିଁ । ସେମାନେ ସାଂଘାତିକ "ହସପିଟାଲ ରୋଗ"କୁ ପରାଭୂତ କରିପାରୁ ନଥିଲେ ମଧ୍ୟ ପୁରୁଣା ବ୍ୟବସ୍ଥାକୁ ଛାଡ଼ିପାରିଲେ ନାହିଁ ।

ଲିଷ୍ଟରଙ୍କ ବିଶ୍ୱାସ ଥିଲା ଯେ, ଲଣ୍ଡନ ହସ୍‌ପିଟାଲରେ ଯଦି ସୁବିଧା ପାଇବାର ସୁଯୋଗ ତାଙ୍କୁ ମିଳେ, ସେ ପରୀକ୍ଷା କରି ସମସ୍ତଙ୍କୁ ଦେଖାଇଦେବେ ରୋଗୀଙ୍କୁ ହସ୍‌ପିଟାଲ ରୋଗ ବା ରକ୍ତ ବିଷାକ୍ତି

ରୋଗରୁ ରକ୍ଷା କରିବାପାଇଁ ତାଙ୍କ ଉଦ୍ଭାବନ ଏକମାତ୍ର ଉପାୟ । ଏହି ସୁଯୋଗ ପାଇବା ପାଇଁ ତାଙ୍କୁ ବହୁ ବର୍ଷ ଅପେକ୍ଷା କରିବାକୁ ପଡ଼ିଲା ।

୧୮୭୭ ରେ ଲଣ୍ଡନର କିଙ୍ଗ୍‌ସ୍ କଲେଜରେ ସର୍ଜରି ପ୍ରଫେସର ଭାବରେ ସେ ନିଯୁକ୍ତ ହେଲେ । ସେ ଏଡ଼ିନବର୍ଗ ସ୍ଥାନଟିକୁ, ସେଠାରେ ଥିବା ନିଜ ବନ୍ଧୁମାନଙ୍କୁ ଛାଡ଼ି ଯିବାକୁ ଇଚ୍ଛୁ ନଥିଲେ; ତଥାପି ନିଜର ଅବ୍ୟର୍ଥ ଆଣ୍ଟିସେପ୍‌ଟିକ ବ୍ୟବସ୍ଥାକୁ ପ୍ରମାଣ କରାଇଦେବା ଅଭିପ୍ରାୟରେ ଲଣ୍ଡନ ଯିବାକୁ ବାଧ୍ୟ ହେଲେ ।

ଲଣ୍ଡନ ଯାଇ ଦେଖିଲେ, କିଙ୍ଗସ୍ ମେଡ଼ିକାଲ କଲେଜରେ ଓ୍ୱାର୍ଡ଼ଗୁଡ଼ିକ ଖାଲିପଡ଼ିଛି । ରୋଗୀ ତ ନାହାନ୍ତି, ଛାତ୍ର ସଂଖ୍ୟା ମଧ୍ୟ ବହୁତ କମ୍ । ସେଠାରେ ଏଭଳି ଭାବରେ ଶିକ୍ଷା ଦିଆଯାଉଥିଲା ଯେ, ଛାତ୍ରମାନେ ଏକାବେଳକେ ବିରକ୍ତ ହୋଇ ପଡ଼ୁଥିଲେ । ନୂଆ କଥା ଶିକ୍ଷା କରିବେ କ'ଣ, କେବଳ ପରୀକ୍ଷାରେ ପାସ କରିବା ଥିଲା ସେମାନଙ୍କର ପ୍ରଧାନ ଲକ୍ଷ୍ୟ । ତେଣୁ ଲିଷ୍ଟରଙ୍କ ଆଣ୍ଟିସେପ୍‌ଟିକ ବ୍ୟବସ୍ଥା ଶିକ୍ଷା କରିବାକୁ ସେମାନେ ବିଶେଷ ଆଗ୍ରହୀ ନଥିଲେ ।

ହସ୍‌ପିଟାଲରେ ଯେଉଁ ରୋଗୀ କେତେ ଜଣ ଥିଲେ ସେମାନେ ହସ୍‌ପିଟାଲ ରୋଗ ଓ ଜ୍ୱରରେ ଆକ୍ରାନ୍ତ ହୋଇ ପଡୁଥିଲେ । ଲିଷ୍ଟର ପ୍ରଥମେ ପ୍ରଥମେ ଛାତ୍ରମାନଙ୍କ ମନୋଭାବ, ରୋଗୀମାନଙ୍କର ଏଭଳି ଦଶା ଦେଖି ହତାଶ ହୋଇପଡ଼ିଲେ । ଲଣ୍ଡନର ସର୍ଜନମାନେ ମଧ୍ୟ ଲିଷ୍ଟରଙ୍କ ଆଣ୍ଟିସେପ୍‌ଟିକ ବ୍ୟବସ୍ଥା କଥା ଶୁଣିବା ମାତ୍ରେ ଥଟ୍ଟା ପରିହାସ କରିବାକୁ ଲାଗିଲେ ।

ଥରେ ଏକ ରୋଗୀକୁ ହସ୍‌ପିଟାଲରେ ଭର୍ତ୍ତି କରାଗଲା । ତାର ଅଣ୍ଟୁ ଭାଙ୍ଗି ଯାଇଥାଏ । ତାର ଚିକିତ୍ସାଦାୟିତ୍ୱ ପଡିଲା ଲିଷ୍ଟରଙ୍କ ଉପରେ । ସେ ଆଣ୍ଟିସେପ୍‌ଟିକ ପଦ୍ଧତିରେ ଏହି ରୋଗୀର ଚିକିତ୍ସା କଲେ । ଅନ୍ୟ ସର୍ଜନମାନେ ତାଙ୍କ ଚିକିତ୍ସାକୁ ଲକ୍ଷ୍ୟକରି କହିଲେ, "ଲିଷ୍ଟର ସାହେବ ! ତମର ଏ ରୋଗୀଟି କେବେ ମରିବ ? ରୋଗୀକୁ ଜାଣିଶୁଣି ମାରିବା ଲାଗି ଏଭଳି ବ୍ୟବସ୍ଥା କରିବା କୌଣସି ସର୍ଜନ ପକ୍ଷରେ ଏକ ଉଚିତ କାର୍ଯ୍ୟ ନୁହେଁ କି ?"

ଲିଷ୍ଟର ସେମାନଙ୍କୁ କହିଲେ, "ଧୈର୍ଯ୍ୟଧରି ଅପେକ୍ଷା କର । ତୁମମାନଙ୍କ ହାତରେ ରୋଗୀ ମରୁଛନ୍ତି ବୋଲି ଯେ ମୋ ହାତରେ ମରିବେ, ସେପରି ଭାବିବା ଭୁଲ ।" ଅଳ୍ପଦିନ ଭିତରେ ରୋଗୀଟି ସମ୍ପୂର୍ଣ୍ଣ ସୁସ୍ଥ ହୋଇଉଠିଲା । ପରେ ପରେ ଅନ୍ୟ ଡାକ୍ତର ତଥା ସର୍ଜନମାନେ ଲିଷ୍ଟରଙ୍କ ଆଣ୍ଟିସେପ୍‌ଟିକ ଚିକିତ୍ସା ପ୍ରଣାଳୀକୁ ସ୍ୱୀକାର କଲେ ଓ ଗ୍ରହଣ କଲେ ।

କ୍ରମଶଃ ସମଗ୍ର ପୃଥିବୀରେ ଏହି ଆଣ୍ଟିସେପ୍‌ଟିକ ଚିକିତ୍ସା ବ୍ୟବସ୍ଥା ପ୍ରଚଳିତ ହେଲା । ସମଗ୍ର ୟୁରୋପ, ଆମେରିକା ଓ ଫ୍ରାନ୍‌ସର ଡାକ୍ତରମାନେ ଏହି ଆଣ୍ଟିସେପ୍‌ଟିକ ପ୍ରଣାଳୀ ଦ୍ୱାରା ବଡ଼ ବଡ଼ ଅସ୍ତ୍ରୋପଚାର କରିବାକୁ ସାହସ କଲେ । ଲିଷ୍ଟରଙ୍କ ପୂର୍ବରୁ ସେମାନେ ରୋଗୀର ରକ୍ତ ବିଷାକ୍ତ ହୋଇପଡ଼ିବା ଭୟରେ ଅପରେସନ କରିବାକୁ ଭୟ କରୁଥିଲେ । ସେମାନଙ୍କର ଏ ଭୟ ଗ୍ଲଲିଗଲା । ଲିଷ୍ଟର ବିଶ୍ୱବିଖ୍ୟାତ ହୋଇପାରିଲେ ।

ଲିଷ୍ଟର ଜଣେ ପ୍ରତିଭାବାନ ସର୍ଜନ ହୋଇପାରିଥିଲେ ମଧ୍ୟ ଆଜୀବନ ସେ ନିଜକୁ ଜଣେ ଛାତ୍ର ମନେ କରୁଥିଲେ । ସେ କହୁଥିଲେ

ଚିନ୍ତା କେବେହେଲେ ଶେଷ ହୋଇଯାଇ   ନପାରେ । କିଛି ନା କିଛି ଶିଖିବା ପାଇଁ ବାକି ରହିଥାଏ ।

ସେ ଆମେରିକା ପରିଦର୍ଶନରେ ଗଲାବେଳେ ସେଠାରେ ଡାକ୍ତରମାନେ ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରି କହିଥିଲେ, ଲିଷ୍ଟରଙ୍କ ଭଳି ବିନୟୀ, ନିରହଙ୍କାରୀ ବ୍ୟକ୍ତି କ୍ୱଚିତ୍ ଦେଖିବାକୁ ମିଳନ୍ତି । ସେ ଅନ୍ୟ କୌଣସି କଥାରେ ଭୁଲ ସ୍ୱୀକାର କରିବାକୁ ପ୍ରସ୍ତୁତ; କିନ୍ତୁ ତାଙ୍କର ଆଣ୍ଟିସେପ୍‌ଟିକ ଚିକିତ୍ସା ବ୍ୟବସ୍ଥାକୁ ଭୁଲ ବୋଲି କହିଦେଲେ ସେ ତାକୁ ବରଦାସ୍ତ କରିବା ପାଇଁ ପ୍ରସ୍ତୁତ ନୁହଁନ୍ତି । କାରଣ ତାଙ୍କର ଏହି ଚିକିତ୍ସା ପ୍ରଣାଳୀ ହେଉଛି ଅଭ୍ରାନ୍ତ ।

୧୮୮୩ରେ ସେ ରାଣୀ ଭିକ୍ଟୋରିଆଙ୍କ ଦ୍ୱାରା ଇଂଲଣ୍ଡର ଶ୍ରେଷ୍ଠ ଡାକ୍ତର ଭାବରେ ସମ୍ମାନିତ ହେଲେ । ଏହି  ସମ୍ମାନ ଲାଭ ପରେ ମଧ୍ୟ ଲିଷ୍ଟର ତାଙ୍କ ଗବେଷଣାରୁ ନିବୃତ୍ତ ହୋଇ ନଥିଲେ । କ୍ଲାସମାନଙ୍କରେ ଲେକ୍‌ଚର ଦେଉଥିଲେ, ନୂଆ ନୂଆ ପରୀକ୍ଷା କରୁଥିଲେ । ହସ୍‌ପିଟାଲରେ ରୋଗୀଙ୍କ ଚିକିତ୍ସା କରୁଥିଲେ । ସଭା ସମିତିରେ ଯୋଗ ଦେଉଥିଲେ । ସବୁ କାମ ଚାଲିଥିଲା ତାଙ୍କର ।

୧୮୯୩ରେ ସେ ତାଙ୍କ ସ୍ତ୍ରୀଙ୍କ  ସହିତ ଛୁଟି କଟେଇବା ଲାଗି ଯାଇଥିଲେ ଇଟାଲି । ସେଠାରେ  ପହଞ୍ଚିବାର ସପ୍ତାହକ ପରେ ଶ୍ରୀମତୀ ଲିଷ୍ଟର ନିମୋନିଆ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ ଏବଂ ସ୍ୱଳ୍ପଦିନ ଭିତରେ ତାଙ୍କର ମୃତ୍ୟୁ ହୋଇଗଲା । ଏହା ହେଲା ଲିଷ୍ଟରଙ୍କ ଜୀବନରେ ଏକ ବଜ୍ରାଘାତ ଭଳି । ଯାଇଥିଲେ  ଦୁଇଜଣ ଆମୋଦ ପ୍ରମୋଦରେ ଛୁଟି କଟେଇବା ପାଇଁ । ଲିଷ୍ଟର  ଫେରିଲେ ଏକା ଏକା । ବର୍ତ୍ତମାନ ଲଣ୍ଡନ ଘରେ ତାଙ୍କୁ ଏକାକୀ କଟେଇବାକୁ  ପଡ଼ିଲା । ସେ ବନ୍ଧୁହୀନ ହୋଇ ପଡ଼ିଲେ । ତାଙ୍କ ଲେକ୍‌ଚର ନୋଟଗୁଡ଼ିକୁ କପି କରିବାପାଇଁ

ଆଉ କେହି ନାହାଁନ୍ତି । ଗ୍ରାମଖା ଲିଷ୍ଟର ସିମେ ତ ଆଉ ନାହାନ୍ତି । ସେ ସବୁ କାମ କରିବ କିଏ ?

ଲିଷ୍ଟର ସମସ୍ତ ପ୍ରକାରର ଗବେଷଣା କାମକୁ ଏକାବେଳକେ ଜଳାଞ୍ଜଳି ଦେଇ ଚୁପ୍‌ଚାପ ବସିରହିଲେ ବହୁତ ଦିନ ।

୧୮୯୭ରେ ସେ ରୟାଲ ସୋସାଇଟିର ସଭାପତି ଭାବରେ ନିର୍ବାଚିତ ହେଲେ । ଏହି ସମ୍ମାନ ଫଳରେ ସ୍ତ୍ରୀଙ୍କ ମୃତ୍ୟୁଜନିତ ଦୁଃଖ ବହୁ ପରିମାଣରେ ଲଘୁ ହେବାକୁ ଲାଗିଲା । ଠିକ୍ ସେହି ବର୍ଷ ସେ 'ବାରନ' ପଦ ଲାଭ କଲେ । ଏହି ପଦବୀ କମ୍ ଲୋକଙ୍କୁ ମିଳିଥାଏ । ୧୯୦୩ରେ ସପ୍ତମ ଏଡ୍‌ଓ୍ୱାର୍ଡ଼ଙ୍କ ଦ୍ୱାରା ପ୍ରତିଷ୍ଠିତ "ଅର୍ଡ଼ର ଅଫ୍ ମେରିଟ" ପାଇଁ ଯେଉଁ ବାରଜଣଙ୍କୁ ବଛାଗଲା, ସେମାନଙ୍କ ମଧ୍ୟରେ ଥିଲେ ପ୍ରଫେସର ଲିଷ୍ଟର ।

ସେ ବହୁବର୍ଷ ଧରି ବଞ୍ଚିଥିଲେ । ୧୯୦୭ରେ ତାଙ୍କର ୮୦ତମ ଜନ୍ମ ବାର୍ଷିକୀ ମହାସମାରୋହରେ ପାଳନ କରାଯାଇଥିଲା । ୧୯୧୨ରେ ୮୫ ବର୍ଷ ବୟସରେ ସେ ଇହଲୀଳା ସମ୍ବରଣ କଲେ । ତାଙ୍କ ବିୟୋଗରେ ପୃଥିବୀରେ ଶୋକର ଛାୟା ଖେଳିଯାଇଥିଲା । ସେ ଚାଲିଗଲେ କ'ଣ ହେଲା, ତାଙ୍କର ଆଣ୍ଟିସେପ୍‌ଟିକ ଚିକିତ୍ସା ବ୍ୟବସ୍ଥା ଏପର୍ଯ୍ୟନ୍ତ ଅମର ରହିଛି । ଲିଷ୍ଟର ବାସ୍ତବରେ ପ୍ରାତଃସ୍ମରଣୀୟ; କାରଣ ତାଙ୍କ ଯୋଗୁଁ ଆଜି କୋଟି କୋଟି ଲୋକ ମୃତ୍ୟୁମୁଖରୁ ରକ୍ଷା ପାଉଛନ୍ତି ।

